ଜବାକୁସୁମ ସଂକାଶଂ (କବିତା ସଂକଳନ)

ପ୍ରତିଭା ଶତପଥୀ

.............................................................................

ପ୍ରକାଶକ : ସ୍ୱସ୍ତିକ, ଶୈଳଶ୍ରୀ ବିହାର, ଭୁବନେଶ୍ୱର
ବିତରକ : ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ,
ଭୁବନେଶ୍ୱର-୧୨, ଫୋନ୍: ୯୪୩୭୫୦୦୭୬୭
ପ୍ରଚ୍ଛଦ: ଅଶୋକ ମହାନ୍ତି
ମୁଦ୍ରଣ : ଡୁଡୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ଭୁବନେଶ୍ୱର
ପ୍ରଥମ ପ୍ରକାଶ : ୨୦୧୬
ମୂଲ୍ୟ : ୧୩୦.୦୦

**JABAKUSUMA SANKASAN**

by Dr. Prativa Satpathy

Published by **SWASTIK,** Sailashree Vihar, Bhubaneswar
**Marketing by : Paschima Publications.** 1882,
Nayapalli, Bhubaneswar, Odisha-12
1st Edition: 2016
Price . 130.00

Email: paschima1990@yahoo.com

# ଏ ସଂକଳନର ଅଗ୍ରଲେଖ-

## ବିଶିଷ୍ଟ କବିମାନେ ଯାହା କହିଥାନ୍ତି

'ସାହିତ୍ୟ ଭାରତୀ ସମ୍ମାନ' (ଗଂଗାଧର ରଥ ଫାଉଣ୍ଡେସନ୍ ତରଫରୁ) ଉତ୍ସବରେ ପ୍ରଦତ୍ତ ମୁଖ୍ୟ ଅତିଥି କବି **ସରସ୍ୱତୀ ରମାକାନ୍ତ ରଥ** ଙ୍କ ବକ୍ତବ୍ୟ-

କବି ପ୍ରତିଭା ଶତପଥୀଙ୍କ କାବ୍ୟକୃତିର ଆକଳନ କରିବାର ଧୃଷ୍ଟତା କରିବି ନାହିଁ, ସଂକ୍ଷେପରେ କହିବି ଯେ ନିଜର ଜାଗତିକ ସତ୍ତାରୁ ମୁକୁଳି ଯିବାପାଇଁ ତାଙ୍କର ଆସ୍ପୃହା ସହିତ ରହିଛି ମଧ୍ୟ ଅବହେଳିତ, ନିର୍ଯ୍ୟାତିତ ଲୋକଙ୍କ ପାଇଁ କରୁଣା । ତାଙ୍କର ଅଭୀପ୍ସାର, ଅଭିବ୍ୟକ୍ତିର ଗୋଟିଏ ନମୁନା ଦେଉଛି-

"ମୁଁ ଉଡ଼ିବି ଗ୍ରହ ଗ୍ରହାନ୍ତର ମିଶିଯିବି ଅସୀମ ଶୂନ୍ୟରେ
ସୀମିତ ମୋ ତନୁତେଜି ସୀମାହୀନ ମନର ସୋହାଗେ,
×× ×× ××
ଦେହର ଝଞ୍ଜିରେ ବନ୍ଧା ଆହା ମୁଁ କି ନର୍ଝର ହେଉଛି ।"

- 'ଲାଂଗୁଳାର ସଂଗୀତ', ଅସ୍ତଜହ୍ନର ଏଲିଜି ସଂକଳନ ।

ପ୍ରତିଭା ସେ ଦିବ୍ୟସତ୍ତାର ପ୍ରତୀକ୍ଷା କରନ୍ତି "ଆଦିଅନ୍ତ ଲମ୍ବିଥିବା ଏ ବାଲିରେ ତୁମ ପଦ୍ମପାଦରେଖା ।" ସେ ନିଶ୍ଚିତ ଯେ ସେ ସତ୍ତାର ସଂସ୍ପର୍ଶରେ "ସକଳ କ୍ଷୁଦ୍ରତା ଠାରୁ ସ୍ୱାର୍ଥ ଆଉ ଅହଂକାର ଠାରୁ, ପ୍ରସ୍ତପ୍ରସ୍ତ ମୋହ ପଟଳରୁ, ସମୟର ବର୍ବର ହାତରୁ" ସେ ମୁକୁଳିଯିବେ ।" ଶବରୀ କାବ୍ୟ ସହ ସେ ଯିବାକୁ ବାହାରି ପଡ଼ିଛନ୍ତି- "ହାଡ଼ର ମଳିନ ରୁପା ଅଳଂକାରକୁ, ରଫୁକରା ରକ୍ତ ମାଂସର ପାଟଶାଢ଼ୀକୁ ମାଜିବା ପାଇଁ" ବି ତାଙ୍କୁ ବେଳ ନାହିଁ । ଶୁଣନ୍ତି, ମାୟାମୁକ୍ତ ଅରଣ୍ୟର ଅଜ୍ଞାତ କୋଣରୁ" ଡ଼ାକଟିଏ,- 'ତନ୍ମୟ ଧୂଳି' ।

ପ୍ରତିଭାଙ୍କ କବିତାର ଭାଷା ନିତିଦିନିଆ ଜୀବନର ଭାଷା, ସେ ଭାଷା ପୁଣି ବାଟ କଢାଉଥାଏ ନିତିଦିନିଆ ଜୀବନ ବାହାରେ ଥିବା ଜୀବନକୁ । ସେ କବିତା ଅନେକ ଅସାଧାରଣ କିନ୍ତୁ ଅସ୍ୱାଭାବିକ ମନେ ହେଉ ନଥିବା ଚିତ୍ରକଳ୍ପରେ ସମୃଦ୍ଧ । "ପାଣି ଉପରେ କୁହୁଡ଼ି / ଲଟେଇଥିବା କଳମ ଲଟାପରି" ଦୃଶ୍ୟ ଚିତ୍ରକଳ୍ପରେ ତାଙ୍କ କବିତା ଭରପୂର ।

ପଦ୍ମଭୂଷଣ ରମାକାନ୍ତ ରଥ

ସରସ୍ୱତୀ ସମ୍ମାନପ୍ରାପ୍ତ କବି ଓ ଲେଖକ **ଜଗନ୍ନାଥ ପ୍ରସାଦ ଦାସ** ଙ୍କ ବକ୍ତବ୍ୟ- "କବି ପ୍ରତିଭା ଶତପଥୀ ନିଜସ୍ୱ ସାଧନା ଓ ନିଷ୍ଠାବଳରେ ନିଜକୁ ଅନ୍ୟତମ ବିଶିଷ୍ଟ ଓଡ଼ିଆ କବି ଭାବେ ପ୍ରତିଷ୍ଠିତ କରିଛନ୍ତି । ବିଗତ ଶତାବ୍ଦୀରୁ ଓଡ଼ିଆ ସାହିତ୍ୟରେ ଚଳି ଆସୁଥିବା 'ଜନାନା କଂପାର୍ଟମେଣ୍ଟକୁ ଅଚଳ କରି ଦେଇଛନ୍ତି ।" (ଦିଲ୍ଲୀ ସାହିତ୍ୟ ଏକାଡେମୀ ହଲ୍‌ରେ ଉନ୍ମୋଚିତ ପୁସ୍ତକ "ତୁହ୍ମାରେ ଲିୟେ ହରବାର"ର ଉଦ୍‌ଘାଟନ ଅବସରରେ) ।

**ଜ୍ଞାନପୀଠ ପୁରସ୍କାର ବିଜେତା କବି କେଦାର ନାଥ ସିଂ** ଙ୍କ ହିନ୍ଦୀ ବକ୍ତବ୍ୟର ଓଡ଼ିଆ ପ୍ରରୂପ-

"କବି ପ୍ରତିଭା ଶତପଥୀଙ୍କ କାବ୍ୟିକ ବକ୍ତବ୍ୟ ଓ ସ୍ୱରରେ ନାରୀର ଅନ୍ତର୍ବେଦନା, ପୀଡ଼ା ଓ ସାହସିକତା ଏକତ୍ରିତ ହୋଇ ବର୍ତ୍ତମାନର ନାରୀବାଦୀମାନଙ୍କ ସ୍ୱରକୁ ନିଷ୍ପ୍ରଭ କରି ପକାଉଛି ।"

("ତୁହ୍ମାରେ ଲିୟେ ହରବାର"ର ମୁଖବନ୍ଧରୁ ୨ ଧାଡ଼ି)



# ସୂଚୀପତ୍ର


| କ୍ରମ | ବିଷୟ | ପୃଷ୍ଠା |
|---|---|---|
| ୧ - | ଜବାକୁସୁମ ସଂକାଶଂ... | ୯ |
| ୨ - | କୁନି ଈଶ୍ୱର | ୧୧ |
| ୩ - | ଜନ୍ମଦିନର ଡ଼ାକ | ୧୩ |
| ୪ - | ଚନ୍ଦ୍ରମା | ୧୫ |
| ୫ - | ବହିମାନେ କଥା ହୁଅନ୍ତି | ୧୭ |
| ୬ - | ଶବ୍ଦ | ୨୦ |
| ୭ - | କାବ୍ୟନାୟିକା | ୨୨ |
| ୮ - | କୋଣଟିଏ, ଶବ୍ଦଙ୍କ ପାଇଁ | ୨୪ |
| ୯ - | ଇତିହାସର ପଥର | ୨୬ |
| ୧୦ - | କବି, ପୃଥିବୀ | ୨୮ |
| ୧୧ - | ମହାଦ୍ରୁମ | ୩୦ |
| ୧୨ - | ବାଲିପୋଖରୀ : ମୋର ଦୁଃଖସୁଖ | ୩୨ |
| ୧୩ - | ଗରି ବର୍ଷର ଝିଅଟିଏ | ୩୮ |
| ୧୪ - | ସେଇ ସ୍ତ୍ରୀ ଲୋକଟା | ୪୧ |
| ୧୫ - | ଆଖି ଆଖିର କବିତା | ୪୪ |
| ୧୬ - | ଶୁଖିଲା ଭୂଇଁରେ କେତେ ଫୁଲ... | ୪୬ |
| ୧୭ - | ବାହାରି ଯିବି | ୪୮ |
| ୧୮ - | ଖରା | ୫୦ |
| ୧୯ - | ଗରି ଦିଗରୁ | ୫୨ |
| ୨୦ - | ଫାଶ | ୫୪ |
| ୨୧ - | ଦଗାବାଜ୍ | ୫୭ |
| ୨୨ - | ହୋରିରଂଗେ ବିହରି | ୫୯ |

୨୩- ଛାତିରେ ଲଦା ପଥର ୬୧
୨୪- ସବାଶେଷକୁ ୬୩
୨୫- ସହଯାତ୍ରା ୬୫
୨୬- ଅସ୍ତ କ'ଣ ? ୬୭
୨୭- ଗୋପ୍ୟ ଚିଠିଟି ୬୯
୨୮- କାନ୍ଦନା, ଜମା ୭୨
୨୯- ଆକାର ୭୪
୩୦- ଅନଭିବ୍ୟକ୍ତ ୭୬
୩୧- ଶେଷଯାଏଁ ୭୮
୩୨- ଆମେ ଦୁହେଁ ନଥିବା ୮୦
୩୩- ଫେରନ୍ତା ବାଟ ୮୨
୩୪- ମର୍ମର ଭ୍ରମ ୮୪
୩୫- କହିଲେ ନ କହିଲେ ୮୬
୩୬- ଅନ୍ଧାର ସାତରାତି ୮୭
୩୭- କାଠ ପିତୁଳା ୮୯
୩୮- ଜନ୍ମରୁ ଯୁବତୀ ୯୨
୩୯- ସମୟର ଦର୍ପ ୯୪
୪୦- ପରିତ୍ୟକ୍ତ ଘର ୯୬
୪୧- ହାତ ନ ଧରିଲେ ୯୯
୪୨- ଠିକଣା ନାହିଁ ୧୦୧
୪୩- ସ୍ଥିତିମାଗେ ୧୦୩
୪୪- ସମୁଦ୍ର ଉପରର କୁହୁଡ଼ି ୧୦୫
୪୫- ପ୍ରତୀକ୍ଷାରେ ତୋର ୧୦୭
୪୬- ଝିଅଟିର ଦିନରାତି ୧୧୦
୪୭- ବାସ୍ନା ୧୧୨
୪୮- ବଣଦେବତୀ ୧୧୪
୪୯- ରାସ୍ତା ମଝିର କଥା ୧୧୭

| | | |
|---|---|---|
| ୫୦- | କି ଟାଣପଣ ଛିଃ- | ୧୨୦ |
| ୫୧- | ପାଣିପବନ | ୧୨୧ |
| ୫୨- | ଅକାଳ | ୧୨୩ |
| ୫୩- | ଅଗଷ୍ଟ ନଅ'ର ନାୟକ | ୧୨୫ |
| ୫୪- | ଆସିପାରେ | ୧୨୭ |
| ୫୫- | ହରିଣାକ୍ଷୀ ଭୂମି | ୧୨୯ |
| ୫୬- | କ୍ଷମାକର | ୧୩୧ |
| ୫୭- | ଲୋଡ଼ାନାହିଁ | ୧୩୩ |
| ୫୮- | ଆଜି ନୁହେଁ | ୧୩୫ |
| ୫୯- | ଜାଗା ଅଛିକି ସ୍ୱର୍ଗପୁରରେ ? | ୧୩୭ |
| ୬୦- | ଶବ୍ଦକୁ ଖୋଜିଲି | ୧୩୯ |
| ୬୧- | ଯୋଡ଼ି ଦେବାର ସାହସ | ୧୪୦ |
| ୬୨- | ଖୋଜିବା ପାଇଁ ତାକୁ | ୧୪୨ |
| ୬୩- | ଏଇ ବଗିଚା | ୧୪୪ |
| ୬୪- | ଠୋପାଏ ସଜରକ୍ତ | ୧୪୬ |
| ୬୫- | କବିଟିଏ, ନାରୀଟିଏ | ୧୪୮ |
| ୬୬- | ଭିନ୍ନ | ୧୫୧ |
| ୬୭- | ମିଛ | ୧୫୨ |
| ୬୮- | ଆଦିଗୁରୁ | ୧୫୪ |
| ୬୯- | ଲେଖୁ ଲେଖୁ... | ୧୫୬ |
| ୭୦- | ମୁଁ କିଏ ତେବେ | ୧୫୮ |
| ୭୧- | କେଇ ମିନିଟ୍ ସମୁଦ୍ର | ୧୫୯ |
| ୭୨- | ଆଶା ଅନେକ | ୧୬୧ |
| ୭୩- | କବିତାର ମୁକ୍ତି | ୧୬୨ |
| ୭୪- | ଅହଂକାରର ଶବ୍ଦଖେଳ | ୧୬୪ |
| ୭୫- | ମହୁ ଠୋପାକ | ୧୬୬ |
| | କବି ଡ଼କ୍ଟର ପ୍ରତିଭା ଶତପଥୀଙ୍କ କୃତି ଓ କୃତିତ୍ୱ | ୧୬୮ |

# ଜବାକୁସୁମ ସଂକାଶଂ...

ସୂର୍ଯ୍ୟ,
ତୁମ ସେ ପାଖର ବିସ୍ତାର ଭିତରେ
ପାଣିଫୋଟକା ଥାଏ ?
ଥାଏ କାହାର ଅସ୍ତିତ୍ୱ ?
ଶୁଭିଯାଏ ଗୀତ ?
ଛପ୍ପନ କୋଟି ଜୀବଙ୍କ ଭିତରୁ, ତୁମେ
କାହାକୁ ମନେରଖ ସୂର୍ଯ୍ୟ ?

ନଦେଖି ଦେଖିବା ଅଭ୍ୟସ୍ତ ମୁଁ
ଆସନ୍ନ ଗୋଧୂଳିରେ
ଅନାଇଁ ରହେ ତୁମକୁ ।

ତୁମ ପୃଷ୍ଠଦେଶରେ ଲାଗିଚି କି ରକ୍ତଛିଟା ?
ମୋ ଆର୍ତ୍ତନାଦ, ମୋର ଉଲ୍ଲାସ
ସବୁଥିରେ ନିସ୍ପୃହ ତୁମେ,
ତେବେ କାହିଁକି ମୋ ପାଇଁ
ସଜେଇ ରଖିଚ ବଗିଚା
ଚିତ୍ର ବିଚିତ୍ର ଯେ ପୃଥିବୀର ନକ୍ସା ?

ସାମ୍ନାରେ ତୁମର ଶୁଖିଯାଇଛି ନଈ
ଜଳିଯାଇଛି ବନସ୍ତ ।
କେବେ ରତ୍ନର ତ କେବେ କପୋଳର
ମଝାମଝି ଝଲସିଉଠେ ତୁମ ମୁହଁ
ଛାୟାପଥମାନଙ୍କ ଆଡ଼କୁ
ତୁମେ ବି କ'ଣ କଣେଇଁ ଚାହିଁ
ହସିଦିଅ ?

ମୋତେ ଲାଗେ
ମୋ ଭିତରେ ଗୋଟେ ଅଂଶ ଦପ୍ ଦପ୍ ତୁମର,
ତାକୁ ମିଛ, କ୍ଷଣିକ ବୋଲି
ତୁମେ କହିପାର

ଫୁଲରେ, ଇନ୍ଦ୍ରଧନୁରେ ତୁମେ ଯେ ରଂଗବୋଳ
ବୋଳି ଲାଗିଥାଅ
ଯା' ଭିତରୁ ଭଲା କିଏ
କ୍ଷଣିକ ନୁହଁ, ମିଛ ନୁହଁ ?

ତୁମେ ତ ପାହାନ୍ତାରେ ଡ଼ାକିଥିଲ ସେଦିନ
ଝର୍କାବାହାରେ ପାଣିଫାଟୁଥିଲା ଅନ୍ଧାର-
ଚେତାପାଇ ଉଠିପଡ଼ିଲା ବେଳକୁ
ଧାଇଁଗଲା ବେଳକୁ ଅସମ୍ଭାଳ ମୁଁ
କହିଲ, "ପାଖକୁ ଆସନା ମୋତେ
ତୁମେ ଯେ ରଙ୍ଗଟିଏ କେବଳ"-
ଅର୍ବୁଦ ଅର୍ବୁଦ ଏକକର !

❑

# କୁନି ଈଶ୍ୱର

ପୂର୍ବଦିଗ ଉଷୁମ
ଝାପ୍‌ସା ଲାଲ୍ ଶରମାନ
ଗଳିଯାଉଚ଼ି ମାଟିରେ
ଆମ୍ବ, ନିମ୍ବ ଝଂକାଗଛ ଡ଼ାଳରେ
କଜଳପାତି ଛୁଆଁଙ୍କ ଚିଁ ଚିଁ
ବାଡ଼ି ମନ୍ଦାର କଢ଼କୁ ଚ଼ରିଲାଗିଚ଼ି କଉଡ଼ିଆପୋକ
ଇଟା, ମାଟି, ଗୋଡ଼ି ସନ୍ଧିରେ
ବାଟ ଖୋଜୁଚ଼ି ପିଂପୁଡ଼ି-
ଗୋରୁ ପିଠିରେ ବସି ଦୋଳି ଖେଳୁଚ଼ି ବଗ ।

ଛନ୍ଦାଛନ୍ଦି ଗଛ ଦି'ଟା ତଳେ
ହାଲୁହାଲୁ ବାଇଚ଼ଢେଇ ।
ବୁଦା ଗହଳରେ ଡ଼ାଆଁଶ
ଏଣେ ଆଳୁଅର ନକ୍‌ସାତଳେ
ଆସ୍ତେ ଫିଟି ଆସୁଥିବା ଗଛବୃଛ-
ଏଇ ଉଜ୍ଜ୍ୱଳ ମୁହୂର୍ତ୍ତରେ ଜଡ଼େଇ ଧରୁଚି ମତେ ।

କାକର-ଓଦା କନିଅର
ଗଂଗଶିଉଳିର ମୋହକ ବାସ୍ନା

ଗଛଡ଼ାଳରୁ ଖସି ପଡ଼ିଥିବା
ଚଢ଼େଇର ଅଧାଖିଆ ପାଚିଲା କୋଳିକୁ
ଟାକି ବସିଚନ୍ତି ଜହ୍ନାପଲ,
କୁଆ ମଇତା ଲଟାବାଡ଼ରେ
ଫଳ ଖୁଂପୁଚି଼ ତରକାଣୁଆ-
ଅତିଭୌତିକ ଧକ୍ ଧକ୍ ସୁନ୍ଦର ପୃଥ୍ୱୀୟେ ।

କୁହୁଡ଼ିଆ ନଈଧାରରେ ଝୁଂକିପଡ଼ି
ଅସ୍ପଷ୍ଟ ମୁହଁ ଦେଖୁଚି଼ କିଶୋରୀ
ଚୁଂଗୁଡ଼ିଆଦଳ, ଦଣ୍ଡିକ୍ଷୀରି
ୟେ କ'ଣ ବୈକୁଣ୍ଠପୁରୀ ?

କଂକ୍ରିଟ୍ ଜଂଗଲ ମଝିରେ
ନର୍ଦ୍ଦମାକଡ଼ ମୁଚୁକୁନ୍ଦଡ଼ାଳରେ କୁଦିକୁଦି
ଖେଳରେ ମାତିଲାଗିଚ଼ ଗୁଣ୍ଡୁଚି
ଏମାନେ ସବୁଦିନର ।

ତୁମେ ବା ମୁଁ
ଆମେ  କେହି ଥାଉ ନ ଥାଉ
ଏ ମାନେ ଥିବେ ।
ଚିହ୍ନିପାରେ ମୁଁ ଏମାନଙ୍କ ଆତଯାତ ।
ମନେ ମନେ ପ୍ରଣାମକରେ-
"କୁନି ଈଶ୍ୱର, ମୋର କୁନି ଈଶ୍ୱର ।"



# ଜନ୍ମଦିନର ଡ଼ାକ

ଜନ୍ମଦିନରେ ମୋର, ଡାକିଦେଲା କିଏ
ବୋଉର ଡ଼ାକପରି ଶୁଭିଗଲା ତ
ସେ ଯେ କେବେ ଠୁଁ ନାହିଁ-
ଏମିତି ଗୋଟିଏ ମଗୁଶୀର ଭୋର
ମତେ ଜନ୍ମକଲା
ଝର୍କା ସେପଟୁ, ଫୁଲବୁଦାମାନଙ୍କୁ
ଅନେଇଁ ଥିଲା ଯନ୍ତ୍ରଣାକାତର,
ତା' ପରେ ମନମରା ହୋଇ ପାଳିଲା-

ଆଜୀବନ ଗୋଟିଏ ଭଂଗାଡ଼େଣାକୁ ବୋହି
ଉଡ଼ିଲା-ରୋଗ ଭୋଗିଲା
ଘର, ବାହାର, ମନ୍ଦିର, ପୂଜାଘର
ନୈଶ ବିଦ୍ୟାଳୟ ପାଠ ଶିଖାଇଲା,
ସାଇ ପଡ଼ିଶାଙ୍କ ସେବାକଲା-
ଗାଈ ଦୁହିଁଲା-ପେଇଲା ମତେ ।

ତା' ଯନ୍ତ୍ରଣାକୁ ମୁଁ ବା ଦେଖିଲି କେବେ
ବୁଝିଲି, ଭୋଗିଲି ଟିକେ ଟିକେ-

ଆଜି ମୁଁ ବି ଉଡୁଚି / ଭଂଗାଡ଼େଣାକୁ ବୋହି-
ସମୟ ତ ଅଟକେ ନାହିଁ,
ବୋଉକୁ ଖୋଜିଲେ ମିଳେ ନାହିଁ-
ପାଖରେ ଥାଏ, ପୁଣି ନଥାଏ
ଦିଶୁଥାଏ ତ, ଚିହ୍ନବର୍ଣ୍ଣ ନଥାଏ ପୁଣି
ଆଜି ଗୋଟେ ଦିନରେ
ସେ ମୋତେ
କୋଉଠୁ ଡ଼ାକି ଦେଲା କେଜାଣି !

❑

# ଚନ୍ଦ୍ରମା

ପ୍ରସ୍ତ ପ୍ରସ୍ତ ରହସ୍ୟର
ଗଣ୍ଠିମାନ ଖୋଲିଗଲାପରେ ବି
ତୁମେ କେଡ଼େ ସୁନ୍ଦର !

ଅନାଇଁ ଦେଲେ ଜ୍ଞାନ ହଜେ
ହେଜରେ ନଥାଏ ବିଜ୍ଞାନ
ସତକୁ ପୋଛିପକାଇବା କ'ଣ
ସୁନ୍ଦରର ଧର୍ମ ?

କୋଉ ସତ୍ୟରୁ, ଭୂଗୋଳରୁ
ତୁମର ଜନ୍ମ
କୋଉଥିରେ ଗଢ଼ା ତୁମଦେହ
ସୁନାମୁଣ୍ଡା ଦାଉଦାଉ
ନା ମଧୁରତୁର ମହୁ ?

ଥାଅ ଯଦି ପାଖରେ
ଯଦି ଗର୍ଜୁଥାଏ ସମୁଦ୍ର
ତୁମେ ପହଁରି ଆସ,
ତୁମ ଚାହାଣିରୁ ବୁଣିଯାଏ କୌତୂହଳ
ପୁଲକଫୁଟେ
ପଲ୍ଲବି ଯାଏ ମୋର ରୋମମୂଳ ।

ସବୁ ରହସ୍ୟର ଅନ୍ଧାର ଅଛି
ସବୁ ସୁନ୍ଦରର ପାଖେପାଖେ ଅନ୍ଧାର
ଯେମିତି ତୁମେ ଥିଲେ ବି
ଚଇତି ପର୍ବ ନାଚରେ
ଝୋଲାକୂଳେ
ବଣଫୁଲ ଝୁମେତ
ଉଲ୍ଲାସରେ ଭୟମିଶେ
କୁଦିପଡ଼େ ଅମଣିଷର ଛୁରୀଦାଢ଼ !

ଯେମିତି ବର୍ଷାପରି ଗଳିପଡ଼େ
ଧାର ଧାର ଲୁହ ମୋର
ତଟସ୍ଥ ହେବା ଆଗରୁ
ଚମକି ପଡ଼େ ଶୋଣିତ ଧମନୀର
ହେଲେ ପୃଥ୍ୱୀପରେ ପୃଥ୍ୱୀ
ଆକାଶଗଂଗା ଗୋଟାକ
ମାତିଥାନ୍ତି ଚକା ଭଉରୀ ଖେଳରେ
ମୁଁ ସେଠି କୋଉଠିଥାଏ ସତରେ !

ପାଖମଣିଷ ଜଣକ
କେତେ ବେଳୁ ଉଭାନ୍
ସ୍ୱପ୍ନର ପ୍ରତୀକ ତୁମେ ନଥାଅ ।
ମୁଁ ଏକା–
ମୋ ନଗଣ୍ୟ ଥିବା ପଣରେ
ତୁମେ ଆଡ଼େ ହାତ ବଢ଼ାଏ ।



# ବହିମାନେ କଥା ହୁଅନ୍ତି

ଆଲମିରା ଭିତରେ ବହିମାନେ କଥା ହୁଅନ୍ତି,

ବାସ୍ନା ପରି ସଞ୍ଚରି ଆତଯାତ ହୁଅନ୍ତି ଘନଘନ
ଶୁଣିଥିବେ କେହି କେବେ ନା କେବେ
ସେମାନଙ୍କ ନିଃଶ୍ୱାସ, ନିଶ୍ଚୁପ ଉଚ୍ଚାରଣ ।

ଅଚିହ୍ନା ଭାଷାର ବହି ଯେତକ
ଜାକିଜୁକି ଘୁଞ୍ଚିଆସନ୍ତି ପାଖକୁ
କୋଳକୁ ଟାଣିଆଣି ଆଈପରି
ଗପ ମେଲନ୍ତି,
ଚିହ୍ନା ଭାଷାର ବହିଯାକ
ପାଖକୁ ଗଲେ ତୁନି ପଡ଼ିଯାନ୍ତି ।

ଧାଡ଼ିମାନଙ୍କଠାରେ ବେପଥୁ
ଗୁଣ୍ଡୁଚିର ହୃତ୍‌ସ୍ପନ୍ଦ ପରି ଚଳମାନତା
କାନଡେରି ଜଗିବ ତ, ଛୁଇଁବ ତାକୁ,

ଉଡ଼ିପଳାଉଥିବା ଯୁଗମାନେ
ଥମ୍‌କିଯାଆନ୍ତି
ଲକ୍ଷକୋଟି ପୃଷ୍ଠାରେ ସେଇ ହସ, ସେଇ ଲୁହ
ଯୁଦ୍ଧ ବିଗ୍ରହ

କ୍ରୋଧ, ପ୍ରତାରଣା
ହଜାଇ ଦେବାର ନିରୁପାୟପଣ
କେତେ ନିର୍ଯାତନା, କେତେ ଚୁପ୍ ଅନ୍ତର୍ବେଦନ ।

କଅଁଳ ପତ୍ର ଗୋଛାଏ ପରି
ଖୁଜୁବୁଜୁ ପଙ୍କ୍ତିଗୁଡ଼ିକ
ମନ୍ତ୍ର ପାଲଟନ୍ତି
ସ୍ୟାହିବୁନ୍ଦାଏ ଭିତରେ ବୁଡ଼ି ରହିଥିବା
କୋଟିକୋଟି ନାଆଁ
ଯାହା ଉପୁଜି ଉଠନ୍ତି
ଚାଷୀଙ୍କ ଫସଲ ବୁଣା କଟାର ଉଲ୍ଲାସରୁ,
ମାଆର ନିଦୁଆ ନାନାବାୟାରୁ,
ପୃଥିବୀର ଯୁଦ୍ଧବାଦ୍ୟରୁ,
ଝୁରି ମରୁଥିବା ଭଲ ପାଇବାରୁ,
ଚଢ଼େଇଙ୍କ ହୀରା ବର୍ଷିଲା ପରି କିଚିମିଚି ରାବରୁ ।

ପାରୁଚ ତ ଶୁଣ, ଲୁଚିକରି ଶୁଣ
କିଛି ଠିକ୍‌ଠାକ ନ ଥାଏ ସେମାନଙ୍କର
କେବେ ପଦ୍ମପତ୍ରର ଥାଳିରେ ପାଖୁଡ଼ା ଢଙ୍କା ହେଇ
ଆସିଥିଲେ ସେମାନେ, ଶଙ୍ଖନାଦରେ,
କେବେ ବା ପୋଡ଼ା ହୋଇଥିଲେ
ପ୍ରତିବାଦର ଗଦାଗଦା ନିଆଁରେ,
କେବେ ବା କବିଟେ ନିଜେ
ପୃଷ୍ଠା ପରେ ପୃଷ୍ଠା
ଜାଳି ପକାଇଥିଲା କ୍ଷୋଭରେ
ପାହାଡ଼ ପରି ତୁଙ୍ଗ ଅଭିମାନରେ ।

ଆବେଗ, ବିକ୍ଷୋଭ, ଅଭିମାନ
ଲେଖନ୍ତି, ଲିଭାଇ ଦିଅନ୍ତି ସେମାନଙ୍କୁ
'ଅନ୍‌ଲାଇନ୍'ରେ ଦିଶୁ କି ନ ଦିଶୁ
ସେମାନଙ୍କ ମୁହଁ
ଫିଟୁ କି ନ ଫିଟୁ ସେମାନଙ୍କ ହୃଦୟ ।

ଏକଥା ସତ
ଯୁଗାନ୍ତକାରୀ ସର୍ଜନା ଓ ସର୍ଜକ
ସେମାନେ ମୁହୂର୍ତ୍ତକୁ ମୁହୂର୍ତ୍ତ ନବଜାତ ।
ଶୋଚନା ନ ଥାଏ ତିଳେ
କେହି ଘେନିଲେ, ନ ଘେନିଲେ
ଅନବରତ ଆଳାପରତ ସେମାନେ
ନିଜ ନିଜ ଭିତରେ ।



## ଶଙ୍ଖ

ଅଧରାତି
ଅତଳପାଣିରୁ ଉବୁକି ଉଠି
ସେ ଡେଇଁ ପଡ଼ିଲା ମୋ ଛାତିକି
ଗୋଲାପିରଂଗର ଜିଭଟିଏ ସତେକି
ହଲ୍‌ଚଲ୍, ବାଳୁତ ପିଲାର
ଆଂଙ୍ଗୁଳିରେ ମୁଠେଇ ଧରିଲି ତାକୁ ।

ସେ କହିଲା, ତୁମ ଛାତିରେ ଲଦା ପଥର
ବୋହି ଚାଲିଚ ତୁମେ କେତେ ଓଜନିଆ
ଅଚଳ !
ଉଶ୍ୱାସ କରିଦେବି ମୁଁ
ଦେଖ, ମତେଛାଡ଼ ।—

କେତେ ଭୟଙ୍କର ତିମି ତିମିଙ୍ଗଳ
ଧକ୍‌ଧକ୍ ପ୍ରବାଳ
ଛକିଥିବା ଅନ୍ଧ ଆଁ-
ତାରି ମଝିରେ ମୋର ଘର ।

ଚଉକତି ତୁମର ଆତଯାତ
ମୋରି ରୂପ ମାଳମାଳ
ସମୁଦ୍ର ଆଉ ପାହାଡ଼ ଖୋଲରେ
ମୁଁ ବଂଚି ରହିଚି ଯେ
ଚିହ୍ନିପାରୁନ ମତେ ?
ଛପ୍ନାକୋଟି ଜୀବର
ଛପ୍ନାକୋଟି ବୋଝଭାର ।
ଭାବନାହିଁ ତୁମେ ଏକା,
ଅବଲୟରେ କହିଦେଲି ସିନା
ଆମେ ଛନ୍ଦାଛନ୍ଦି
ଆଖିକୁ ଦିଶୁ ନଥିଲେ ବି
ଗୋଟିଏ ଡ଼ୋର-
ଛିଡ଼ିବନାହିଁ ଜମାରୁ
ବାଜିଲାଗୁ, ସାରାବ୍ରହ୍ମାଣ୍ଡର
ଟାଣପଣ, ବଳ ।

କେତେ ଲକ୍ଷବାର
ମୀନ ଜାଆଁଳ ପରି,
ଟିକି ଚଢ଼େଇପରି ମୁଁ
ଅଠାପରି ଲାଗିଯାଇଚି ଛାତିରେ
ଓହ୍ଲାଇଚି କାନ୍ଧରେ ତୁମର
ତୁମେ କିନ୍ତୁ ଅଣନଜର କରିଚ, ସବୁଥର ।

କେତେ ଛୋଟ ମୁଁ ଦେଖିଲ
ତଥାପି ବି ନୁହେଁ ଛଟପଟ, ଅସ୍ଥିର
ଜାଣିରଖିଚି ବାଗ
ଜୀଇଁବାର, ମରିବାର ।



## କାବ୍ୟନାୟିକା

ସତ୍ୟର ମାରାତ୍ମକପଣକୁ ଭୋଗିଚାଲିଥିଲା ବେଳେ
ସ୍ୱପ୍ନର ମରାଳକୁ ଛାତିରେ ଜାକିଧରିବା
କେତେ କଷ୍ଟକର, ଜାଣ !

ତାରାମାନଙ୍କୁ ବି ଅଗଣିତ
ଅକ୍ଷରରେ, ଶବ୍ଦରେ, ହୃଦୟରେ
ତୁମେ ଉଚ୍ଚାରିଚ୍ଚ ବାରବାର
ବିପୁଳତା ତୁମେ ବ୍ରହ୍ମାଣ୍ଡର,
ମଧୁର ତିଳ ଚିହ୍ନର,
ଶାଣିତ ଅବାଧପଣ କଳ୍ପନାର-
କେତେବାର ମରିଚ ତୁମେ, ବୁଡ଼ିମରଚ
ମୁଣ୍ଡକୋଡ଼ି ମରିଚ, ହା' ହା' କରି ମରିଚ
ଗଢ଼ାହେଇଚ, ଭାଙ୍ଗିଯାଇଚ
ଜୀଇଁଉଠିଚ ଅଜରାମର ।

କଲମ, ତୂଳୀ, ନିହାଣ, ମୁଗୁର, ବାଦ୍ୟଯନ୍ତ୍ର
ତୁମେ ପାଦ ଦେଇଚ ସେଇଠି
ଲାଗିଚ ବି ଖସିଗଲା ଭଳି ସେଇଠୁ ଅନ୍ୟତ୍ର ।
ସାଇତିଚ ତୁମେ ହିଁ
ଟିପେ ଆଶାକୁ ଜଳାଇ ରଖିବାର ଦୀପଟି ।
ମୂର୍ତ୍ତ ହେବାରେ ଯାତନା ଅଛି
ଡେଇଁ ଯିବାରେ ଅଛି ନୂଆପଣ

କିନ୍ତୁ ଯାତନାକୁ, ନୂଆପଣକୁ
ତୁମେ ଅକାମୀ କରିଦେଇ ପାରିନ କଦାପି ଏ କଥା ବି ଜାଣ ।

ପ୍ରେମପରି କ୍ଷଣସ୍ଥାୟୀ
ଯେ କବିତାର କାନକୁହା,
ଚିତ୍ରର ସଚଳତା, ନିହାଣ ଚୋଟ
ଶବ୍ଦର, ତୂଳୀର ଲାଖ
ହାରମାନିଚି ତୁମଠି
ଉତୁରି ପଡ଼ିଚ୍ ତୁମେ ଅନବରତ ।

ଜୁଡ଼ାରେ ଖୋଷିଦେଇ ସାରିଚ୍
ପ୍ରେମିକକୁ, ସମୁଦ୍ରକୁ, ବନ୍ୟାକୁ, ତାରାକୁ
ଗୁମ୍ଫାକୁ, ଗହ୍ୱରକୁ
ଆଉ ଖାତିର୍ କାହାକୁ ?
କାଦୁଅରେ ପଡ଼ି ମଂଜିପରି, ପଚିବନାହିଁ ତୁମେ,
ଫିଟିପଡ଼ିବ ଆଲୁଅ ଦିଗକୁ
ଉଠିଯିବ ଗଛ ହେଇକି-
କିନ୍ତୁ ପ୍ରତିଟି ଥର ତୁମେ ନୂଆ
ତନୁରେ ସୂର୍ଯ୍ୟୋଦୟର ଆଭା
ଲାଜରେ ଲାଲ୍ ପଡ଼ିଯାଏ ଧଳା କାଠଚମ୍ପା ।

ତୁମ ସିଂହାସନ ଚାରିପାଖେ ଅପ୍‌ସରୀଙ୍କ ଭିଡ଼
ତୁମ ପାଦତଳେ ଲକ୍ଷେ ମଳା ଭଅଁର ।
କୋଟିଏ ହୃଦୟର ଗୂଢ଼ତା
ଲେଖା ରହିଚି ତୁମଠି
ଅଥଚ, କେହି ଆଦରିବାକୁ ଗଲେ
ତୁମେ ଅକୁଳାନ
ଯେତିକି ନିକଟ, ସେତକି ଦୂର । ❑

# କୋଣଟିଏ, ଶବ୍ଦଙ୍କ ପାଇଁ

ଶୁଆପର
ପାକଳ ସିଝୁବାଡ଼
ଆମ୍ବ ନଡ଼ିଆ ବହଳ
ଉପରେ ମୁହଁ ଲଦିଚି ଚକ୍ରବାଳ
ପାଉଁଶରଙ୍ଗ, ଫିକାନୀଳ ।

ବର୍ଷାଋତୁ ଚିତ୍ରକର ଇନ୍ଦ୍ରଧନୁର
ଝିଲର, ବିଲର, ମୁହଁସଞ୍ଜର ।

ଈର୍ଷା, ଅହଂକାର
ଚତୁରତା, କ୍ରୂରତାର ନାନାତୀର
ଗଳିଯାଉଚି ଚେତନାରେ
ରକ୍ତ ବୋହୁନି
ଜମାଟ ବାନ୍ଧିଯାଉଚି ଧମନୀ ।

କେବଳ ରାତି ନୁହଁ
ସକାଳ, ସଂଜ, ଦି' ପ୍ରହର
ନିଆଁ, ଏସିଡ୍ ଶିଶୁ ବାଳିକା, ତରୁଣୀଙ୍କ
ରକ୍ତ, ରେତ ବୋଳା
ଛିନ୍‌ଭିନ୍ ଶରୀର ।
ଶବ୍ଦ ବସାବାନ୍ଧିବ କୋଉଠି ?
କେତେକେତେ ଭାବ

ଉଙ୍କିମାରି ଫେରୁଛନ୍ତି
ଅଥଚ, ତିଆରୁ ନାହାନ୍ତି କୋଣଟେ
ଶବ୍ଦଟିଏ ବସାବାନ୍ଧନ୍ତା ଯୋଉଠି !

ଅଚିହ୍ନା ନକ୍ଷତ୍ରର ହାତଧରି ଘୂରି ଲାଗିଛନ୍ତି
କେତେକେଜାଣି ପୃଥ୍ୱୀ
ଏଣେ ସୋରଗୋଳ ଲାଗିରହିଚି ଏଠି ।

ଠୋ ଠୋ ହସ କାହାର
ରାତି ଅଧ ବର୍ଷାପରି ଗଳଗଳ
ଅନତି ଦୂରରୁ ହ୍ୱିସିଲ୍ ଟ୍ରେନ୍‌ର
ହତାବାହାରେ କୁକୁରଙ୍କ ରଡ଼ି
ଲଗାତର ।

ଅନିଦ୍ରାରେ ମାତିରହି କବିଟେ
ଆଞ୍ଜୁଳା ଆଞ୍ଜୁଳା ଶବ୍ଦକୁ
ଛାଟିଦଉଚି ଶୂନ୍ୟକୁ
ଯାଆନ୍ତୁ, ନୂତନ ଛାୟାପଥରେ
ଗୀତହେଇ କମ୍ପୁଥାଆନ୍ତୁ ସେମାନେ
ନ ହେଲେ ପକ୍ଷୀହେଇ କୁହରୁଥାଆନ୍ତୁ
ଅନ୍ୟ କେଉଁ ପୃଥିବୀରେ ।

ସେ ନିଜେ ହୁଏତ
ଦେଖିବ ନାହିଁ
ଦେଖିପାରିବ ନାହିଁ
ସେହି ଅଚିହ୍ନା ପୃଥ୍ୱୀକୁ
ଶବ୍ଦଙ୍କର ନବଜନ୍ମକୁ ।
❑

## ଇତିହାସର ପଥର

ରାତିଅଧ ଟ୍ରେନ୍
ହାଣ୍ଡିଆ ନିଶାରେ କୁଦିଚାଲେ
ବାଉଳେ ହାଲହୁଳି
ପୋଡ଼ିଉଠେ ନିଦ ନଥିବା ଆଖି ।

ଲୁହା କଂକ୍ରିଟର ବଖରା
ନ ଥାଏ ବର୍ଷା ଖରା
ଜହ୍ନ ନ ଥାଏ ଆଖପାଖରେ
ଆଜି ବି କ'ଣ ଛୁଟିଚାଲଚି ସେ
ପିଛାଧରି ତୁମର ?
ସେଇ ପଚିଶ ବର୍ଷ ତଳର ଜହ୍ନ
ବୟସ ବଢ଼ିନାହିଁ ତା'ର ?

'ରାମନାମ ସତ୍ୟହୈ'ରୁ ଖସିପଡ଼େ
ଅମ୍ଳଜାନ ମୁଣା
ଧାଡ଼ିଧାଡ଼ି ଆଲୁଅ ଅନ୍ଧାରର ପଣିକିଆ
କ'ଣ ଗୋଟେ ଗୁଣନ, ହରଣ
ସରି ସରି ଯାଏ ।

ଅହଂକାର, ତୋତେ ଚିହ୍ନି ନଥିଲି କେବେ ।
ପରଖି ନଥିଲି ନିଜ ଦେହର ତାତି
ଭିଜାଇ ନଥିଲି ମୁହଁ

ମନେରଖି ନଥିଲି
ନିଜ ଇଂଗିତମୟ ଆଖି ।
ଭୁଲିଥିଲି ଶାଢ଼ୀ, ଶେଯ, ମନ
ଆଢ଼େଇ ଯାଇଥିଲି ଦାଉ ଦାଉ ସ୍ୱପ୍ନ ।

ମୋ ଧାନଗଛ ଶିମୁଳିଫୁଲ, ଓସ୍ତପତ୍ର
ମୋ କଦମ୍ବଡ଼ାଳର ପାହାଚ
ଲୁହରକ୍ତର ଡୋର
ଯୁକ୍ତିଛଳରେ ନିଜକୁ ସାବ୍ୟସ୍ତ କରୁଥିବା
ନିଷ୍ଠୁର
ଯେ ସମସ୍ତଙ୍କ ଠିଁ ଖଣ୍ଡେ ଖଣ୍ଡେ
ଜହ୍ନ ଝୁଲାଇ ଦେବାର ସ୍ୱପ୍ନମୋର-
ସ୍ୱପ୍ନବୋଧେ ଖସିପଡ଼ିବା, ବୁଣିଯିବା ନିଧାର୍ଯ୍ୟ,
ମୁକ ପାଲଟିଯିବା ବି ନିଧାର୍ଯ୍ୟ ।

ନିହାତି ରାତିଅଧ ଟ୍ରେନ୍‌ର
ଶଂଖ ଫୁଙ୍କା, କାହାଳୀ ଫୁଙ୍କାରେ
ଶାଢ଼ୀକୁ ଛୁଇଁ ଦଉଚି ତ ନିରଂଗ
ଶେଯକୁ ଛୁଇଁଦଉଚି ତ ହେମାଳ
ଛାତିର ସବୁଜତାରେ ଅଗ୍ନି ଉଦ୍‌ଗାର-

ମୁଁ ଯେମିତି ଭିନ୍ନ ଜଣେ ମୀରା
ଗଳାରେ କଳାମୁକ୍ତାର ମାଳ
ମୋର ସାରଂଗୀରେ, କଲ୍ୟାଣ ରାଗରେ
ଫାଟି ଯାଉଚି ଇତିହାସର ପଥର ।

❑

# କବି, ପୃଥିବୀ

କେବେ ହୁଂକା ତ
କେବେ ଗୁଂଫା
କେବେ ଗଛ-ବାରୁଦ
କ୍ୱଚିତ ପଦ୍ମବନର ନିସର୍ଗ
କେବେ ସକାଳର ଖରାପରି
କୁନିଝିଅର ହସ
ଆଖି ପିଛୁଡ଼ାକେ ଉଭାନ୍ ହୋଇଯାଏ-
ଟି.ଭି. ପର୍ଦ୍ଦାର
ସଦ୍ୟ ହାତଗୋଡ଼ ହରାଇଥିବା
ଛଟପଟ କିଶୋର,
ବୋହି ନ ପାରୁଥିବା ଦୁଃଖ
କବିଟି ବଡ଼ ଅପାରଗ- ।
ପିମ୍ପୁଡ଼ିଟେ କାମୁଡ଼ିଲେ
ଛଟ୍ କରୁଥିବା ଯେ ଦେହ
ଯେ ଦେହର ପରାକ୍ରମ ବଡ଼ ଅସ୍ୱାଦ ।

ଜହ୍ନରାତିରେ ପଡ଼ିଆଭିତରେ ଖେଳୁଥିବା
ମାଟିରଂଗର ନେଉଳ
ଟମାଟୋ ରଂଗ ବୋଲିହୋଇ
ଉଡ଼ିଯାଉଥିବା ଶୁଆଦଳ

ଶୂନ୍ୟରେ ପ୍ଲେନ, ରକେଟ୍
ଅରଣ୍ୟର ନିସ୍ତବ୍ଧତାରେ
ଆଦିମ ବୃକ୍ଷଙ୍କ କୋଳାକୋଳି
ବୃକ୍ଷମୂଳେ ନରସଂହାର ।

ଦୁଇବୁନ୍ଦା ରକ୍ତ ଦେଖି
ଯନ୍ତି ହୋଇଯାଉଥିବା ଛାତି
ମିଠା କଥାରେ ଆବିଷ୍ଟ
ପାଣି ଭଳି, ପଥରଭଳି ହୃଦୟ
ଏସବୁ ନେଇ
କବିଟି କରେ କଅଣ ?

ଭାତଗୁଣ୍ଡା ଉପରେ ବାଜି ଲଗାଇ କେହି
ବିଷ ପିଇଦିଏ ତ,
କେହି ମତ୍ତବ୍ୟସନୀ ପିଶାଚ,
ମଣିଷଟି ଜୀଏଁ କେମିତି ?
କବି ଶବ୍ଦସଜାଡ଼େ କେମିତି,
ଜଣେ ଅନ୍ୟଜଣଙ୍କୁ ଝୁରି ନହେଲେ
ଜୀଏଁ କେମିତି ଯେ ପୃଥ୍ୱୀ ?

ପଥର କଥା ନ ବୁଝିଲେ ଜଳ
ଆକାଶ କଥା ବୁଝୁ ନଥିଲେ ସୌରମଣ୍ଡଳ
ପାଣି ଢାଳେ ନ ହେଲେ ଗଛ
ଅଧାର ମୁଠାଏ ନ ପାଇଲେ ପଶୁପକ୍ଷୀ
କେମିତି ଜୀଏଁ ଯେ ପୃଥ୍ୱୀ
କେମିତି ?



# ମହାଦ୍ରୁମ

ସୂର୍ଯ୍ୟର କାଣିଆଙ୍ଗୁଠି ଛୁଆଁରେ
ମୁହଁ ଟେକିଲି
ଛନ୍ଦାଛନ୍ଦି ଡାଳପତ୍ର
ମୋ ଅଫିଟା ପତ୍ର ଉପରେ
କି' ଉଷୁମ ଆବେଗ ଧାର ଧାର !

ଶପଥ ନେଲି
ଏଇ କିରଣ ହିଁ ମୋର ଜୀବନ
ତାପରେ ତ ଅମଡ଼ାମଡ଼ା ମୋର ଗଢଣ
ପରିତୃପ୍ତ ମୁଁ, ଭୟହୀନ
ଚାରିପାଖର ମହାମହାଦ୍ରୁମ
ସକଳେ ପ୍ରିୟ ପରିଜନ ।

ଖରାରେ ପୋଡ଼ିଲି ଜଳିଲି
ଟାକି ରହିଲି ମେଘକୁ
ହାତୀଶୁଣ୍ଢ ଅଜାଡ଼ି ଦେଲା ପାଣି
ଗଦ୍‌ଗଦ୍ ତିନ୍ତି ବୁଡ଼ିଗଲି ମୁଁ
ପିଇଗଲି ଚଁ ଚଁ
ପତ୍ରର ଅଞ୍ଜୁଳାରୁ ।
କେତେ କେତେ ଚଢ଼େଇଛୁଆଙ୍କ ଖେଳ
ସଫଳ ସୃଜନ ସତେକି
ଲେଖି ହୋଇଗଲା ଡ଼ାଳଡ଼ାଳ...

ମୋର ସ୍ୱପ୍ନଥିଲା ହୃତ୍‌ପିଣ୍ଡର, ହୀରାର
ଖରାବର୍ଷା କାକରର
ସ୍ୱପ୍ନଥିଲା, ଖୋଲି ଆଣିବି ସତ୍ୟକୁ
ମଝି ଆଙ୍ଗୁଠିରୁ କବିତାର—

କିନ୍ତୁ, କି' ହେଲା ଯେ ?
ପ୍ରତୀକ, ରୂପକ ଯେତେ
ଧୂଳିସାତ୍ ହୋଇଗଲେ
ଭୟ, ଅନ୍ଧାର ନାଚି ବୁଲିଲେ ।

ସରସ ଗଣ୍ଡିରୁ ରକ୍ତ ବୋହିଲା
ମୋ ଗଜାସ୍ୱପ୍ନର,
କିଏ ନାଇଁ କିଏ କାଢ଼ିନେଲେ
ଅନ୍ତବୁଜୁଳା
ହାଣିପକାଇଲେ ମୋର ପାଦ,
କାହା ଲୋଭ ନତୁବା ହିଂସାର
ପାଲଟିଗଲି ଭେଦ
ଚିତ୍‌କାତ୍ ପଡ଼ିରହିଲି ରାସ୍ତା ଉପରେ
ନହେଲେ
ଗଡ଼ ଗଡ଼ ଚାଲାଣ ହେଲି
ରାତି ଅଧରେ ।

କେହି ବୁଝିଲେ ନାହିଁ
ଶ୍ୟାମଳ ସ୍ୱପ୍ନଟିଏ ହାଣ ଖାଇଲେ
ଥରକୁ ଥର
ନିର୍ଘାତ ହାଣଖାଉଥାଏ ପୃଥିବୀ ।



# ବାଲିପୋଖରୀ : ମୋର ଦୁଃଖସୁଖ

('ବାଲିପୋଖରୀ'ର ଇତିହାସ ରହିଛି । ବାଲିବନ୍ତ ଭିତରେ ପ୍ରଚୁର ପାଣି, ଶ୍ୱେତ ଓ ରକ୍ତପଦ୍ମ ଭର୍ତ୍ତି ଏହି ପୋଖରୀର ଦୁଇ ପଟରେ ଦୁଇଟି ଗାଁ- "ସତ୍ୟଭାମାପୁର ଉତ୍କଳ ଗୌରବ ମଧୁସୂଦନଙ୍କ ନିବାସ ଗୋଟିଏ ପଟେ, ଅପରପଟେ, ପୁରୁଷୋତ୍ତମ ପୁର ଯାହା ଗଦ୍ୟଶିଳ୍ପୀ, ରାଜନେତା ସୁରେନ୍ଦ୍ର ମହାନ୍ତିଙ୍କ ଚଲାବାଟ ।

ଏ ୨ଟି ଗ୍ରାମର ମଧ୍ୟବର୍ତ୍ତୀ ଏହି ଜଳାଶୟର ପ୍ରାୟ ସ୍ଥିତି ନାହିଁ ବର୍ତ୍ତମାନ- ଅତିଦୟନୀୟ ସେ ଜଳାଶୟ । ତା' ପାଇଁ ୩ ଗୋଟି କବିତା ।)

(ସତ୍ୟଭାମାପୁର ଓ ପୁରୁଷୋତ୍ତମପୁର ଦୁଇ ଗ୍ରାମ ମଝିରେ, ବାଲିକୁଦ ଉପରେ, ଉତ୍କଳ ଗୋରୀବ ନିଜ ନିବାସ ତିଆରିଥିବା ସ୍ଥାନର, ସାମ୍ନାରେ ବିରାଟ ପ୍ରଶସ୍ତ ପଦ୍ମପୋଖରୀ । ତାର ଗୋଟିଏ ପଟେ ମଧୁସୂଦନ ଓ ଅପର ପଟେ ଲେଖକ ସୁରେନ୍ଦ୍ର ମହାନ୍ତିଙ୍କ ଜନ୍ମସ୍ଥାନ । ନାମ ତା'ର ବାଲିପୋଖରୀ । ବର୍ତ୍ତମାନ ତା'ର ସ୍ଥିତି ନାହିଁ କହିଲେ ଚଳେ । ବିଭିନ୍ନ ସମୟରେ ତା' ସହିତ ମୋର ସୁଖଦୁଃଖ)

(୧)

ଲକ୍ଷେଭାର ପଦ୍ମ ସଜାଡ଼ି
ବାଟ ଚାହିଁ ବସିଥାନ୍ତି ସିନା,
ମୋ ଚିକିଟା ମାଟିର ପରୀ,
ମୁଁ ଯେ ଶୁଖି ଶୁଖି ହଉଚି
ପଙ୍କ-କାଦୁଅ-ରୁନ୍ଧା
ବାଲିପୋଖରୀ ।
ଆଖି ନାହିଁକି କାନ ନାହିଁ କାହାର
ଖଣ୍ଡିଆଭୂତ ପରି ସର୍‌ସର୍
ଧାଇଁପଳାନ୍ତି କିଏ କୁଆଡ଼େ

କୁନିମାଛ ଛଟକ୍ ଦେଖାଏ ଯୋଉଠି
କଳାଘୁମର ପାଣିତଳ, ଦେଖୁନୁ
ଶୁଖ୍ ଶୁଖ୍ ହଉଚି ।

ଶାଗୁଆ ଛତାତଳେ ଲହୁଣୀର ପାଖୁଡ଼ା
ବାସ୍ନା ଉଜୁଡ଼ା ଭଅଁର
ଆତ୍ମାର ଉଚ୍ଚାଟ
କୋଉଠି ବଗ ତ କୋଉଠି କଳାନାଗ
ସବୁ ଯେମିତି ପାଶୋରି ଗଲାଣି
ଚିରାଚରିତ ସ୍ୱର ।

ରୁନ୍ଧି ହେଇଚି ଅତୀତ,
ବର୍ତ୍ତମାନ ନିଃଶ୍ୱାସ ଅଛି କି ନାହିଁ
ଶିରା ପ୍ରଶିରା ଦୁହିଁ
ତଥାପି ତେଜି ରଖିଚି
ପତ୍ର କେଇଟି ମୋର
କିଶୋର ପ୍ରେମିକର ଆଖିପରି
ନୀରବ, ଡ଼ବଡ଼ବ
ସଂଚି ଧରିଚି ଅନାଗତକୁ
ଖାସ୍ ତୋଅରି ପାଇଁ ।

ଦିନେ ନାଁ ଦିନେ
କାହାର ନାଁ କାହାର
ଛାତିତଳେ, ଆଖିପତାରେ
ଛଳଛଳ ହବ ପାଣି
ତୋରି ପରି କାହାର
ଝାଳ ବୋହିବ, ମନ ତଟିବ
ଫିଟି ପଡ଼ିବି ଅର୍ଥଟିଏ ହୋଇ ମୁଁ

ପାଲଟି ଯିବି
କାଗଜ କଲମରେ ବୁନ୍ଦାଏ କାଳି
ମୁଁ ବାଲି ପୋଖରୀ ।

( ୨ )
ଚଳାଏ ଗଂଗା ମୋର,
ସ୍ମରଣର କାରିଗରୀରେ
ଫିଟି ବଛେଇ ଯାଉ, ତୁ,
କେବେ ମଧୁବାରିଷ୍ଟରଙ୍କ କୋଠି ତଳେ
ତ କେବେ ସୁରେନ୍ଦ୍ର ମହାନ୍ତିଙ୍କ
ବାଟ କଡ଼ରେ ତ
ମୋ ଘର ସାମ୍ନା
୯ନମ୍ବର କ୍ରିକେଟ ଫିଲ୍ଡ୍‌ରେ ।

ଛୋଟ ଝିଅଟେ, ଫ୍ରକ୍ ପିନ୍ଧି
ପଶି ଆସିଥିଲା
ଛୁଇଁ ଦେଇଥିଲା ତୋର ଛାତି,
ପାଦେ ପାଦେ ଭେଳାଭେଳା,
ବାଲିରଂଗର 'ବାଲିକ୍ଷୀରା'
ନାଚ ନାଚ ଚୁଂଗୁଡ଼ିଆଦଳ
ତାର ବି ସୋହାଗ କମ୍ !
ଫକ୍ ଫକ୍ ପାଣିଶିଉଳି
ସୂର୍ଯ୍ୟ ଆଉ ବଉଦର ଲୁଚକାଳି ।

ଡଗଡଗ ପାଣିକୁଆ
ପତଙ୍ଗଦଳ
ପଦ୍ମର, କୋକନଦର ଗନ୍ଧ ବାତୁଳ
'ଡଲାସ'ର ପଦ୍ମବଣ ଯେ

ଆଶ୍ଚର୍ଯ୍ୟ ତୋର ରୂପାନ୍ତର !
ଚଳାଏ ଅଂଶୁପା ମୋର,
ଚଳାଏ ଗଂଗାଜଳ,
ଅଂଗେ ନିଭାଇଛୁ
ଉତ୍ପାତ କେତେ, କେତେ ହତାଦର !

ଏବେ ଯେ ବେଳ ଆଖର
ଫ୍ରକ୍ ପିନ୍ଧା ଝିଅର ପାଦ ଶିରାଳ,
କର୍ଦ୍ଦମାକ୍ତ, ସାମାନ୍ୟ ତୋର ଜଳ ।

ମୋ ପରେ ବି
ତୁ ଥିବୁ ଏଇଠି
ମଣିଷର ଅବିଚାରର ମାପକାଠି,
ନାଲିଫିତା ତଳେ
ବନ୍ଧା ପଡ଼ିଥିବ ତୋର ଶିରାଧମନୀ
ଅଥଚ, ଢ଼ାଳିଦବାକୁ ରକ୍ତ ନ ଥିବ କାହାଠିଁ ।
ଆଷାଢ଼ ଆସାରରେ ଭରିଉଠିବୁ ଯେବେ
ପଦ୍ମପତ୍ର ଉପରେ ଘୁଷୁରୁଥିବ
କୀଟଟିଏ,
ସୁର୍ଯ୍ୟଚନ୍ଦ୍ର ଓହ୍ଲେଇବେ ଓହ୍ଲେଇବେ
ହଉଥିବେ-
ସେତିକିବେଳେ ବାଳିକାଟେ
ବାଲିଶିରା ତୁଠରେ
କୁତୂହଳୀ ପାଦ ଥୋଇବ,
ଚମକି ଫେରିପଡ଼ିବେ ଅତର୍କ୍ଷି
ଦଳଦଳ କୁନିମାଛ ।

(୩)
ତାତିଲା ଫ୍ରାଇଂପ୍ୟାନ୍ ପରି
ଆଷାଢ଼ର ପ୍ରଥମ ଦିବସରେ, ଆଜି
ଠକ୍ ଠକ୍ ବାଲିପୋଖରୀ-
ମୋ ସ୍ମୃତି, ଅନୁଭବ
ଖଣ୍ଡ ଖଣ୍ଡ କଟିଯାଉଚି
କାଟିପକାଉଚି ହାହାକାରର ଛୁରୀ ।
ଧୂଆଁଳିଆ ଆଖିରେ ମୋର,
ଆଜି, ନିରୁଦ୍ଦିଷ୍ଟ ବାଲିପୋଖରୀ ।

ଦଶବର୍ଷ ତଳେ ତ
ପଦ୍ମପତ୍ର ଢ଼ଳୁଥିଲା ସେଇଠି,
ହଉପଛେ ଅଣ୍ଟାଏ ପାଣି
କୂଳରେ ସନ୍ତସନ୍ତ କାଦୁଅ
ଏଥର ଖୋଳାହବ,
ଗଭୀର ହବ ବୋଲି
ଉଡ଼ି ବୁଲୁଥିଲା ସଂଭାବନାର ଖିଅ,
ଆଠ ବର୍ଷର ବାଳିକା ଆଖିରେ
ପଞ୍ଚଦଶୀ କିଶୋରୀ ସାମ୍ନାରେ
ଉଚ୍ଛୁଳୁଥିଲା ପାଣି
ଧଳା, ନାଲି, ପଦ୍ମଫୁଲର ବିପଣୀ,
ଖଣ୍ଡେ ଅଧେ ଚିକ୍‌କଣ ପଥର
ପାଣିତଳ ନିର୍ମଳ,
ଶିରାଶିରା ବାଲିର ।
ପହଁରି ଆସି ଫେରି ଯାଉଥିଲେ
ଦଳକୁ ଦଳ ଦଣ୍ଡିକ୍ଷୀରି ।
ଆଜି, ଚାରିପଟେ କୁଢ଼କୁଢ଼ ବାଲି ।

ନିଦାରୁଣ ଧ୍ୱଂସର ଶେଷସାକ୍ଷୀ ।
ମୃତ୍ୟୁଦୂତ ଗଲାଣି ଡାକିଡାକି ।
ଜଗତର ସ୍ୱପ୍ନ ପାଇଁ
ନାହିଁ ମୁଠେ ଶୀତଳତା, ସୁବାସ
ଆକାଶର ଦର୍ପଣ ପାଇଁ
ଚେନାଏ ଉଲ୍ଲାସ,
ଶୋଷିଲା ଗାଈଗୋଠ
ଚଢ଼େଇ, ଚିରୁଗୁଣୀ
ହାଟୁଆ ବାଟୁଆଙ୍କର
ପାଣି ମୁନ୍ଦାଏ ପାଇଁ
ହାଇଁପାଇଁ-

ଚତୁରର, ସ୍ୱାର୍ଥବଶର,
ରାଜନୀତିକର ପଶାଖେଳରେ
ପରାଜିତ ଆମ ମଣିଷପଣ ପରି
ଆଜିର ତୁ ବାଲିପୋଖରୀ !



(‘ଟେକ୍ସାସ୍’ର ଡଲାସ୍‌ଠାରେ ଥିବା ପ୍ରଶସ୍ତ ‘ଲୋଟସ୍ ପ୍ୟଚ୍’)

## ଚାରି ବର୍ଷର ଝିଅଟିଏ

ପରସ୍ତେ ଓଦା ପାଉଁଶ-ରଂଗ
ତ ପରସ୍ତେ କଟା ଗାଜରର,
ତା’ ଉପରେ ଭାରତ ମହାସାଗରର
ଧାର,
କେତେ କେଜାଣିରଂଗ
ଚିହ୍ନିପାରିବ କୋଉ ଚିତ୍ରକର ?
ତା’ ଉପରକୁ ଫାଟି ଆସୁଚି
ହୀରାକରାଟ
ତୃତୀୟା ଜହ୍ନର ।

ଚୁମୁଟୁଥିବା ସ୍ମୃତିର ଦରଜାଖୋଲି
ନିରେଖିଲି
କଣ୍ଟେଇକୋଳି ଆକାର ଆଖି କୁ ତା’ର
ଜମା ଚାରିବର୍ଷର !
ଫୁଲ୍‌ଫ୍ରକ୍, ଫୁଲ୍‌ପ୍ୟାଣ୍ଟ, ଫୁଲ୍ ସୁ
କାଚ ଦି’ପଟ ହାତର
ବାପା ଆଉ ବୋଉଙ୍କ ମଝିରେ
ଆଶ୍ଚର୍ଯ୍ୟ କୌତୂହଳ-
ସେ କ’ଣ ଭାବିଥିଲା

ଆକାଶ ବୁଜି ଆସିବ ଦିନେ
ଏଡ଼େ ଚଂଚଳ !
ସେଇ ଯେ ବାପା ବୋଉଙ୍କ
ମଝିରେ ଝିଅ,
କ୍ରମେ ଫାଟିଗଲେ ସେ ଦି'ଜଣ
ଦୂରରୁ ଦୂରକୁ ।
ଝିଅକୁ ଠେଲିଦେଲା ବାପ
ବୋଉ ଆଡ଼କୁ ।

କଣ୍ଢେଇ କୋଳିର ଆଖି ଆୟତ ହେଲା,
ସ୍ୱପ୍ନ ଗଜୁରିଲା,
ଗୀତ ଉତୁରିପଡ଼ିଲା ଦେହରୁ
ମନରେ ଲାଗିଲା ଡ଼େଣା
ଦେବତା, ବେତାଳ, ଅସୁର
ମୁଗ୍ଧହେଲେ
ନିଜ ନିଜ ବାଗରେ ।

ଏଣେ
ଛୁରୀ ମୁନରେ ଭେଦିଗଲା ପୁରୁଷ
ଜ୍ୱଳନ୍ତ ପ୍ରବୃତ୍ତି ତା'ର,
ସେ ସିଝିଲା
ଯନ୍ତ୍ରଣାରେ ନାରୀତ୍ୱର ।

ଶୁଣିଲେ କେହି ତା' ମନକଥା ?
ତା' ଭଲପାଇବାର ଉଚ୍ଚାରଣ ?
ଉଗ୍ର ଜାନ୍ତବ କ୍ଷତଚିହ୍ନ
ଦେହମନର ସବୁଆଡ଼େ
କୋଉଠି ଶୀତଳ, ସ୍ୱଚ୍ଛ ପାଣିଢୋକେ ପରି

ତଥାପି ଡ଼େଣା ଖୋଲୁଥାଏ
ଘର ଚଟିଆଟେ
ତା' ରକ୍ତସୁଅରେ ।

ଆଜି ନୀଳଶିରା, ଧଳାଶାଢ଼ୀ,
ତେଲୁଣି ପୋକର ମଳାପରି
ବସିଥିଲାବେଳେ ସେ
ଊଂକିମାରେ ଏକଦା ସୁନ୍ଦରୀ
ଶାଢ଼ୀସାରା ଗୁଣୁଗୁଣୁ କୁହୁଥାଏ
ଗୀତ,
ଷାଠିଏ ବର୍ଷରେ ବି ଉଚ୍ଚାଟ ।
କେହି ନ ଶୁଣିଲାପରି
ସେ ଡ଼ାକେ
ଆ', ଡ଼େଇଁଯିବା ସନ୍ଧ୍ୟାତାରାକୁ
ଦିଗ୍‌ବିଦିଗ ନଥିବା
ଯେ ଆକାଶକୁ ।

❑

# ସେଇ ସ୍ତ୍ରୀ ଲୋକଟା

ସଜ ପରିବା ପରି ସେ କାଟି ପକାଉଥିଲା
ନିଜକୁ,
ସର୍ବତରେ ଚିପୁଡ଼ି ଦେଉଥିଲା
ରସୁଆଳ ଦେହକୁ ତା'ର
ମୋହିଁ ଦଉଥିଲା ଓଠରେ ।

ଅନ୍ତରାତ୍ମା ମନ୍ଥି ହଉଥିଲା
ସତେ କି ଦୀଘିରେ ଝଡ଼,
ମନ୍ଦିରର ପାହାଚ ପାଲଟିଯାଉଥିଲା
ସେ ନିଜେ
ପ୍ରାର୍ଥନାକୁ ଜଳାଇ ରଖୁଥିଲା
ଦୀପଟି ପରି
ପଣତ ଆଢୁଆଳ ।

ଛନ୍‌ଛନ୍ ପ୍ରାଣ
ଆଖିପତା ନ ଲାଗୁଣୁ ଚାଉଁଚାଉଁ
କୁନି କପାଳ, ବରଫ ଲଦି, ଡହକ ତାତି,
ନୁଆଁଣିଆ ଛାତ ଉପରେ ତେଣେ
ଲଟକିଥାଏ ବାଙ୍ଗୁଆ ଜହ୍ନରାତି ।

ଯମ ଦୁଆରେ ବସି
କାଢ଼ି ପକାଇଥିଲା ଅନ୍ତଫାଡ଼ିକି
ରକ୍ତ ବଳବଳ ନୂଆ ଦୁକୁଦୁକି,
ଯୋଉଠି ବି ଥାଉ
ଛୁଟି ଆସୁଥିଲା କୁନି ମଣିଷର
କୁଆଁକୁଆଁରେ ଚମକି ।
ପେଟରୁ କାଟି ପିଠିରେ ବୋହି,
ସେ ଲୋଡ଼ୁ ନଥିଲା କିଛି,
ନିଜ ପାଇଁ ।

ଡରୁଥିଲା ମରିବାକୁ
କାଳେ ଛେଉଣ୍ଡ ହେଇଯିବ ଛୁଆଟି ।

ସେଇ ସ୍ତ୍ରୀଲୋକଟା
ଏବେ ଫେରିଯାଉଚି-
ତା'ର ଆଜି ଶେଷଦିନ, ଏଇଠି ।
ନିଃଶ୍ୱାସ ତା'ର ସଜହେଲାଣି
ଚାଲିଯିବ ଏଥର
ନାଉରୀ ନ ଥିବା ଡଙ୍ଗାରେ ଚଢ଼ି
ସମୁଦ୍ର ମଝିସରିକି ।

ଚିପୁଡ଼ା, ସିଠା ଶିରାଧମନୀ
ଛତୁଫୁଟା ଅଖାପରି
ଅବର୍ଜ୍ୟା ଗର୍ଭକୋଷ,
ସାଦା ହାତଗୋଡ଼ କାଉଁରିଆ କାଠିର
ସତେ କି ହସ୍‌ପିଟାଲ୍‌ର
ଧଳା ଚଦର ।

ଚେତା ହରାଇଚି ବିବେକ
ଛପି ଯାଇଛନ୍ତି ନୂଆ ମଣିଷଟିମାନ,
ଲାଗିଛନ୍ତି ମୂଷା ଦୌଡ଼ରେ
ଆପଣାର ଧନମାନ, ମିଶାଣଫେଡ଼ାଣ ।

'ଯା' ବୋଲି ହାତ ହଲାଇ
ଦିଅନ୍ତି ଦୂରରୁ
ଚାଲିଯାଉଥାଏ ସ୍ତ୍ରୀଲୋକଟା
ଚଢ଼ି ଉଠି ଢେଉରୁ ଢେଉକୁ ।



# ଆଖି ଆଖିର କବିତା

(ଆମେରିକାରେ ରହୁଥିବା ଅନିବାସୀ ମୋର ଭଗ୍ନୀ-ପ୍ରତିମ ଶ୍ରୀମତୀ ମଂଜୁ ରଥଙ୍କୁ)

ପାହାଡ଼ର ଅଧାକାନ୍ଥିରେ
ମୁହଁ ଲଦି ଶୋଇରହିଚି ମେଘ
ଏଥର ସେ ମୁହଁ ଟେକିବ-

ଗାଈଗୋରୁ କଳାଧଳା କଉଡ଼ିମୁଠାଏ ପରି
ବୁଣିଯାଇଛନ୍ତି ଉଠିଆ କ୍ଷେତ ମଝିରେ ।
ସବୁ ଦୃଶ୍ୟ ଦୌଡ଼ିପଳାଇଗଲା ବେଳେ
ହଠାତ୍ ସେ ପଶିଆସେ
ତା' ମୁହଁର ଇଞ୍ଚ ଇଞ୍ଚ ଭୂଗୋଳରେ
ଜବରଦସ୍ତ ସ୍ଥିର ହୋଇଯାଏ ଆଖି
ଗଛପତ୍ର ସନ୍ଧିରେ କିଆଫୁଲ ଫିଟାଉଚି ପାଖୁଡ଼ା
ଶବ୍ଦ କାହିଁ ?

ଦାନା ବାନ୍ଧୁନାହିଁ କବିତା
ଯେ ଅସ୍ଥିର ଧରାପରା ଭିତରେ-
ଶୁଣିହେଉନି ହୃତ୍‌ସ୍ପନ୍ଦନ ଗୁଣ୍ଡୁଚିର,
ନୀରବତାର ମୁଗୁନିପଥରରେ ରୂପଗଢ଼ିବ

ନିହଣ କାହିଁ ?
ସଇସ ଟାଣିଚାଲିଛି ଓଟକୁ
ସ୍ତିମିତ ଓଟ ନିମ୍ନମୁଖୀ
ଏଥର ସଇସଟି ତରୁଣୀ,
ଆଶା ହତାଶା ମଝାମଝି କୂଳଖାଉଛି ତା'ର ମିଠାଆଖି ।

ମନେ ହେଉଛି
ସେ ଟାଣୁଛି କି ନନ୍ଦିଘୋଷ
ଟାଣିଚାଲିଛି ଏକୁଟିଆ ଶହେବର୍ଷ
ଯା' ଭିତରେ ରଂଗ ବଦଳିଗଲାଣି, ଝଡ଼ିଗଲାଣି
ତା'ର ଦେବଦାରୁ ପତ୍ର ପରି କୁଂଚିତ କେଶ ।

ବେଳେବେଳେ ତରୁଣୀଟି ହାତବଢ଼ାଏ ମତେ
ସେ ହାତବଢ଼ାଏ କି ନାଁ କେଜାଣି
ମୁଁ ବୋଧେ ବଢ଼ାଇଦିଏ ମୋ ଅପାରଗ ହାତ
ପାତାଳପୁରୀର ଐଶ୍ୱର୍ଯ୍ୟମୟ ରାସ୍ତାରୁ ରାସ୍ତାକୁ ।

ହାତପାଏନା,
ମନତଳର ଲତପତ, ଅର୍ଥର ଆଉଁସାଟିକକ
ଲମ୍ବିଯାଇ ପାରେନାହିଁ ତା' ଆଡ଼େ-
କେବଳ ରୁମାଲ୍ ଗୋଟିଏ ପରି ଭୂଇଁଚାଖଣ୍ଡ ଓଦା ହୋଇଯାଏ ।



## ଶୁଖିଲା ଭୂଇଁରେ କେତେ ଫୁଲ...

କୋଉ ଋତୁ ଯେ ?
ବସଂତ ନୁହେଁ-
ନିଦାଘ, ଡହଡହ
ଅଥଚ, ଅଗଣିତ ଅସଂଖ୍ୟ ଫୁଲ
କେମିତି, ଫୁଟିପଡ଼ିଲା, କହ !

ରଙ୍ଗ, ଇନ୍ଦ୍ରଧନୁର,
କ୍ଷଣବଦଳ, ସନ୍ଧ୍ୟାକାଶରେ,
ନାନାଜାତି ତୀବ୍ରବାସ୍ନା ଲଦିହେଇ
ପବନ, ଚଞ୍ଚଳ,
କିଏ, ରାଣ ଦେଲାପରି, ଠିକ୍
ଫୁଟିପଡ଼ିଲା, ଯେ ଫୁଲ !

ଚିରୁଡ଼ା, ଚିରୁଡ଼ା, ଭୂଇଁ
ପୋଡ଼ି ଯାଉଥିବା ଚେର,
ଅହଂକାରର ନଖରେ
ଉଲୁରାପତ୍ର, ଫାଳ ଫାଳ
ଛାତିକୁ ବିନ୍ଧିଦଉଥିବା, ଆକ୍ରୋଶର ତୀର
ବାଲିଗୋଡ଼ି ଗହୀରରେ

ବୁନ୍ଦାଏ ପାଣି ଅଣ୍ଡାଳି
ଅଠା ଅଠା ଶୋଷ, ତଣ୍ଟିର
ଝାଳ, ଲୁହ, ରକ୍ତ ନିଃଶବ୍ଦ ହାହାକାର
ଏଥିକି
କେମିତି ସଜାଇଦେଲା
କମ୍ପ କମ୍ପ ପାଖୁଡ଼ାରେ
ଅସମ୍ଭବ ଯେ ଉଜ୍ଜ୍ୱଳ ହସ ତା'ର-
କେତେ ଫୁଲ, କେ' ତେ' ଫୁଲ...

କାଲିରାତି
ଆକାଶରେ, ମୁକ୍ତାଟେ ପରି, ଖାପିଥିବା ଜହ୍ନ
କିଛି ଠାରିଦେଲା କି ?
କାହିଁ ଦୂରର
'ଗଣ୍ଡକୀ' ଶଯ୍ୟାର ଶୀତଳତା
ଛୁଇଁ ଦେଲାକି, ଥିର୍‌କିନା ?
ମତ୍ତ କୋଉ ନୟନର ନିଶା
ଉଚ୍ଚାଟ କଲା ?

ନା ବିଶଦ ହୃଦୟରେ ଜାକି ଧରିଲେ
କୋଉ ମହାମହିମ ?
ସକାଳେ ଆଜି
ଦିଗନ୍ତ ଫିଟାଇ ଦେଲାପରି
ପ୍ରସ୍ତପ୍ରସ୍ତ ଆବରଣ
ସେ ଫିଟାଇ ଦେଲା, ଗୋଟିଗୋଟି ପାଖୁଡ଼ା
ମେଲିଦେଲା, ରୋମାଞ୍ଚିତ ଗର୍ଭକୋଷ ତା'ର
କେତେବଡ଼ ପତିଆରାରେ !
ଯାବତ ବିଡ଼ମ୍ବନା ଭିତରେ !
ଯେ ଶୁଖିଲା ଭୂଇଁରେ ! ❑

# ବାହାରି ଯିବି

ଗାଲକୁ ଘଷିମାଜି ଦର୍ପଣ କଲି
କଳାହାଣ୍ଡିଆ ଆକାଶରେ ଡେଣାପିଟା ବଗପରି
ବାଳମୂଳରେ ଥାପିଲି କାଠଚମ୍ପା,
ପାନପତ୍ର ମୁହଁ, ପଳାଶପାଖୁଡ଼ା ଓଠରେ
ଗୁଞ୍ଜିଦେଲି ବିଡ଼ିଆ-

ଏଥରକ ବାହାରିବି ମୁଁ
ବିଜୁଳି ଚମ୍‌କୁଥିଲା ଭଳି ଝକ୍‌ଝକ୍
ମୋର ବକ୍ଷକୁ
ସଜାଡ଼ିଦେଲି ପାଟକାନିରେ
ପ୍ରଦୋଷପକ୍ଷୀର ସ୍ୱନ
ଭରିଦେଲି ସ୍ୱରପେଟିରେ-

ହାତଗୋଡ଼ର କୋଉକାଳର ଡୋର
ହିସାବୀ କଥା ଭାଷାର,
ରକ୍ତକୁ ଶୋଷି ଖାଇଲା ସଂପର୍କର,
ଭିତିରି ଚାଲ୍‌ର ଅତରବୋଳା ରୁମାଲ୍
କାଟିକୁଟି ଫିଙ୍ଗିଦେଲି ଦୂରକୁ-
'ଯା, ମୁହଁ ଦେଖାନା ଜମାରୁ ।'

ପ୍ରକାଶକୁଣ୍ଡ, ଉଦ୍ଧତଶବ୍ଦଙ୍କୁ ଗଣ୍ଠିଲିକଲି, ମୁଣ୍ଡେଇଲି
ସାରା ପୃଥ୍ୱୀର ହାହାକାରକୁ
ଅନ୍ତରାତ୍ମାରେ ଲଦିଲି
ବୈଶାଖର ନଈବାଲିକୁ ବିଦାୟ ଦେଲି
କେତେ ନୀଳପାଣି, ରୁପାପାଣି
ଗଦ୍‌ଗଦ୍ ଧାରରେ ଯେ
ବୁଡ଼ିଥିଲି ଦିନେ ।

ପାସୋରି ଦେଲି ଜାଣିଜାଣି,
ତୁମେ ଆସିବ ଆଜି, ମତେ ଖୋଜିବ ନା ?
ଦିନକାଳ ବାକିନଥିବ ଆଉ
ମୋ ଦୁଆର ପାଇଲ କେମିତି
ଦେଖିଚ଼ କୋଉଠି କି ?

କହୁକହୁ ମୁଁ କୁଦିଯିବି
ପ୍ରଥମ ଦେଖା
ଅଥଚ, ତୁମେ ଚିହ୍ନ କେମିତି ?

ଚିହ୍ନିପାର ମୋ ରୂପ, ମୋ ସଜ, ମୋ ଉଚ୍ଚାଟ
ଦୁଆର ଖୋଲି
ତୁମ ଭିତରକୁ ପଶିଯିବାର ଛଟପଟ
ତୁମେ ଜାଣ କେମିତି ?
ନହେଲେ
ଠିକ୍ ମୋ ଦୁଆରେ ଅଟକିଯିବ ଟ୍ରେନ
ଷ୍ଟେସନର ଚିହ୍ନବର୍ଣ୍ଣ ନ ଥାଇ,
ଏତେ ଚୁପ୍‌କିନା ଡାକି ଦବ ଯେ
ମୋ ଛଡ଼ା କେହି ଶୁଣିପାରିବେ ନାହିଁ ? ❑

# ଖରା

ଅଁଳା ଫୁଲ ରଂଗର ଖରା
କୁଦି ଆସିଲା
ନଡ଼ିଆଗଛ ମହୁଡ଼ରୁ
ମାଟିପିଣ୍ଡା, ଅଗଣା
ପିଢ଼ା ଆଉ ଘଳ ମଥାନ ଉପରେ
ଗୋଟି ଗୋଟି ପାଦ ପକାଇ
ପୁଣି ଡ଼େଇଁ ପଳାଇଗଲା-
ଫେରି ଯିବାର ବହୁ ଆଗରୁ
ଖର ଖର ତା' ଯୌବନ
ମୁଠାକୁ ମୁଠା ତାରାଙ୍କୁ
ଛାଟି ଦେଉଥିଲା ନଈସୁଅକୁ-
ସେ ଖରାର କେତେ ନାଆଁ ।
ଅବିଶ୍ରାନ୍ତ ସୁଅ,
ପବନ, ନଈ, ସାଗର ସମୟ
ଆୟୁଷ ପୁଣି ଗଜାବୟସର ଝିଅ ।
ନାଆଁମାନଙ୍କ ଗୁଣ, ଧର୍ମ ଏକା
ଲଗାଏ ନିଆଁ, ଲିଭାଏ ନିଆଁ
ବାଲିକୁ ତତାଏ, ଶୀତଳାଏ
କାହିଁ କେତେଦୂରରେ ଛାଡ଼ିଆସେ

ପ୍ରିୟ ପରିଜନର ଦୁନିଆଁ-
ଦି' ଚାରିଖଣ୍ଡ କଣ୍ଟା ଲୁଗାରେ
ସ୍ନୋ, କୁଙ୍କୁମ ଡ଼ବାରେ
ବିତିଯାଉଥିବା କୈଶୋରକୁ
ସେ ଖାତିର କରେନା ।
ବଢ଼ିପରା ଛିଣ୍ଡା ସଉପ
ବୈଶାଖର ଶେଯ
କାହିଁକି ଦିଶିଯାଏ ବେଳେବେଳେ
ଧରାପଡ଼େ ଚରମ ସତ !
ପାଦରେ ଚଟିହଲେ ବି ନଥାଏ ।
ବୁଝି ହୁଏନା ସମୟ କାହିଁକି
ସେଇଠି ତଟସ୍ଥ ହୁଏ ?

ଖରାର ହାତ ଧରି
ତୁମ ଯାଆ ଆସ
ବାଳ ଗୋଛାକରୁ, ପାଦତଳ
ସେଠୁ ପୁଣି ଲେଉଟାଣି ଦୂର
ଆବେଗ ମରେନା ବୋଧେ
ଜଳୁଥାଏ, ନିଭୁଥାଏ କ୍ଷଣକ୍ଷଣ-
ଯାହା ଦୂରର
ନିକଟ ଠୁ ଭିନ୍ନ ନୁହଁ କଦାପି,
ତା' ସତ
ତା' ସୁନ୍ଦର ।
ଖରା ତୁମକୁ
ତଡ଼ି ନେଇଯାଏ ସିନା
ଥରୁଥାଏ ଅପଲକ
କଅଁଳ ବାଉଁଶ ପତ୍ର ଦୁଇଟି
ତୁମ ଆଖିର । ❑

## ଚାରି ଦିଗରୁ

କୋଉ ଦିଗରୁ ଡ଼ାକୁଚୁ ଯେ !
ମୁଁ ବାରି ପାରୁନି ଜମା-
ସେ କୋଉ ଅନ୍ଧାର ? ମୋ ଭିତରର ?
ମୋ ମୂର୍ଖତା, ଅପାରଗତାର
ନା' ମୋ ଅସମର୍ଥ ଭଲପାଇବାର ?
କୋଉ ଭିତରୁ ଡ଼ାକୁଚୁ ଯେ—
ନେଇ ଯାଉଚୁ ଭିଡ଼ିଟାଣି ଅନ୍ଧାରକୁ
ଜହ୍ନ ଆରପାଖର ସେ ଅନ୍ଧାର
ମୁଁ ଡ଼େଇଁଯାଇ ପହଁଚି ଯାଉଚି ସେଠି
ଭାବୁଚିତ-ଏଇ ଅନ୍ଧାର-
ଟିକେପରେ ଲାଗୁଚି, ଏଇ ଅନ୍ଧାରଭିତରୁ
କିଏ କହିଲାଗିଚି- 'ଲେଖୁନୁ କିଛି-'

ପରକ୍ଷଣରେ ମୁଁ ଏଇଠି-
ଗୋଟେ ଅକ୍ଟୋପସ୍‌ର ହି' ହି' ହସ,
ଚନ୍ଦ୍ରଉଦିଆ ସୁନ୍ଦରୀ ଓଠର ମିଠାକଥା,
ଅହଂକାରର ଦର ଆଉଜା କବାଟ ସେପଟୁ
ଚତୁରତା,

ପାତାଳଫୁଟା ପୋଖରୀତଳର
ସୁନା ଫରୁଆ, ତା'ଭିତର
ଉନ୍ମତ୍ତ ଭଅଁରର ଅଦେଖା ଅଶୁଣା
ଗୁଣୁସ୍ୱର
ଶବ୍ଦ, ଅର୍ଥ, ଚେତନାର ଅବାକ୍ ଗେହ୍ଲାଡ଼ାକ
କୋଉଠି ମୁଁ ? ଯା'ରି ମଝିରେ ?

ପିଲାଦିନୁଁ ଦରାଣ୍ଡିଚି ଯାହାକୁ
ଆଂଗୁଠିରେ ବାଜି ଖସି ପଳାଇଚି
ଥରକୁ ଥର,
ନାଁ ମୋ ମୁଠାରେ ନାଁ କୋଳରେ
ନାଁ ଛାତିରେ ପାଇପାରିଚି ତାକୁ ?
ଲେଖିବି ଯେ-
ଛାଡ଼ିଦେବି କାଳି ବୁନ୍ଦାଏ
ହେଲେ ତୁ
ଲୁଚି ଛପି ରହ ପଛକେ
ପାଖରେ ଠିଆ ହେଲେ ତ !

❑

# ଫାଶ

କେମିତି ଅଛ ? ପଚାରିଦେଲେ
ବଥା କମିଯାଏ ମନର,
ତେଜି ଉଠେ ଆଖି
ଚେତନାର ଧମନୀ ହୁଏ ଚଳଚଞ୍ଚଳ
ସ୍ମୃତି ଫେରି ଆସେ
ଜିଦ୍‌ଖୋର୍ ।

ଦୁଇଖଣ୍ଡ ସାଦାଲୁଗାରେ
ପିଲାଙ୍କର ଦି'ଖଣ୍ଡ ମୋଟା ଜାମାରେ
ଦିନ କଟିଯାଉଥିଲାବେଳେ
ଅନାଇଁ ନାହିଁ
ଧନଧାନ୍ୟର ନଅର ଆଡ଼େ ।

ସତେକି ମୁଁ ରାଜରାଣୀ
ବସିଯାଇଚି ସିଂହାସନରେ–
ସେ ସିଂହାସନ ଶବ୍ଦର
ଅଥଚ, ଶବ୍ଦର ତଳିପା ଛୁଇଁବାକୁ
କେତେ ସଂଭ୍ରମ ମୋର !

ପରକ୍ଷଣରେ
ଫୁଲି ଉଠେ ଛାତି
ଯେ ସବୁ ମୋର-
ଯେ ଇତିହାସ ବହୁଯୁଗର ।
ପାଖ ନଅରରୁ ନହବତ୍ ଉଠେ
ସୁନା ରୂପାଜରିର ଝାଲର ଝକ୍‌ମକାଏ
ଶବ୍ଦକୁ
କେବେ କେହି ସେ ନଅର ଭିତରକୁ
ଭିଡ଼ିନେଇ ପାରେ-
ସଜାଇପାରେ କପଟ ପାଟଲୁଗାରେ !

କେଜାଣି,
ମୋର ବିଶ୍ୱାସ ସେଇ ଚ଼ଢ଼େଇଠାରେ
ଯିଏ ଆଲୁଅରେ ଭିଜୁଥାଏ
ଅଥଚ଼ କଟିନଥାଏ ପାହାନ୍ତି ଅନ୍ଧକାର ସେଯାଏଁ-

ଶବ୍ଦ କପଟ ଭିତରେ ଥାଏ କି ?
ଖସି ପଳାଏନା ?
ଛଳକୁ ଚିହ୍ନାପକାଇ ଦିଏନା ?

ଶବ୍ଦଗୁଡ଼ିକ ଗୋଟିଏ ଗୋଟିଏ ଫାଶ,
ଯାହା ଭିଡ଼ିଆଣେ
ଥରକୁ ଥର
ପ୍ରିୟତମକୁ ମୋର, ସୁଦୂର ଅଂଶକୁ ମୋର
ସନ୍ନିଧିକୁ-,
ହଉପଛେ କ୍ଷଣକ ପାଇଁ
କ୍ଷଣକର ସ୍ଫୁଲିଙ୍ଗଟିଏ ତ
ଆମର ବଂଚିବା ଏଠି !

ଶବ୍ଦଟିଏ ଖୋଜୁଚ୍‌ ଯଦି
ଆଖିକାନ ବୁଜିଦିଅ
ମନକୁ ଚୀରି ପକାଅ-
ଛାତିକୁ ଖୋଲି ରଖ
ଆସିବା ନ ଆସିବାର ପ୍ରତିଶ୍ରୁତି
ମିଳିବ ନାହିଁ ତା'ଠୁଁ,
ହେଲେ, ତାକୁ ବାଦ୍‌ ଦେଇ
ମୁଁ ଯେ କୋଉଠି ବୋଲି କୋଉଠି ନାହିଁ ।



## ଦଗାବାଜ୍

ଗର୍ବ, ଅହଂକାର ବଡ଼ ଦଗାବାଜ୍
ଚିହ୍ନା ପଡ଼େନା, ଝକ୍‌ମକ୍ ପୋଷାକ ପରି
ମିଶିଯାଏ ଦେହମନରେ ।

ତୁମ ସ୍ନେହ ଲୋଡନ୍ତି ଯିଏ
ଆଖି ଫେରେଇନବାକୁ ବାଧ୍ୟକରେ ତାଙ୍କ ଠୁଁ
ଆଈର ବିରି ଅଟକାଳୀ
ବୋଉର ସରୁଚକୁଳିର ଉଷୁମ ହାତକୁ
ଆଡ଼େଇ ଦବାକୁ ସେ ଜିଦ୍‌କରେ
ଅଶକ୍ତ କରିଦିଏ ତୁମ ଚେତନା-

ଧନଗର୍ବ, ରୂପଗର୍ବ, ଯଶଗର୍ବ,
ସବୁଠୁଁ ବିପଜ୍ଜନକ
ଆତ୍ମଘାତୀ ମୂର୍ଖତାର ଗର୍ବ ।
ତାକୁ ଚିହ୍ନିପାରିବନି ତ
ଫିଙ୍ଗିଦବ କୋଉ ବାଗରେ ?

ଘାତକ ପରି ଅନେଇ ରହିଥିଲା ଯିଏ
କଥା ପଦକୁ ତୁମର

ତୁମେ ମୁହଁ ବୁଲେଇ ନେଲ ତାଙ୍କଠୁଁ
ଆଉଁସିଲ, ତୁମ ସହ କପଟ କରୁଥିବା
ବେପରୁଆ ପିଠିକୁ ।
ସକଳ ଗର୍ବର ଅହଂକାରର
ଗୋଟେ ଶେଷବେଳ ଆସେ
ନ୍ୟୂନ କରିଦିଏ ତୁମକୁ
ପମ୍ପୁଡ଼ିପରି, କୀଟପରି
ମୋଡ଼ିପକାଏ ମେରୁଦଣ୍ଡ,
ଭଙ୍ଗା କାନ୍ଥ କଡ଼ରେ
ନହେଲେ ଅରମା ମଝିରେ
ଘୁଷୁରୁ ଥାଅ ତୁମେ, ମୁଣ୍ଡଗୁଂଜ
ସେଠି କେହି ନଥାନ୍ତି, ଅଥଚ ।



# ହୋରିରଂଗେ ବିହରି...

ରଂଗର ଫୁଲଝରି
ଗଛଲଟା ଆମ୍ବବଉଳ କୋଳାକୋଳି ।

ପାହାଡ଼ ଉପରେ ଛୁଟିଗଲାବେଳେ ଗାଡ଼ି
ମେଣ୍ଢାଲୋମ ରଂଗର
ସାରିସାରି ଆମ୍ବବଉଳ
କଞ୍ଚା ବସନ୍ତ ଋତୁ, ସବୁଜ ଗାଢ଼-
ସତେ ବା ଛେଳି ମେଣ୍ଢାଙ୍କ ଗୋଠ
ହେଇଚି ଏକାକାର ।

ଦିନସାରା
କଳାସାପର କାତିଉପରେ
ତେଲ ଠୋପା ପରି
ଚ଼କ୍‌ଚ଼କ୍ ମାରୁଥିଲା ସମୁଦ୍ର
ଦୁଇଟି ଲହଡ଼ି ମଝିରେ
ଦୋହଲୁଥିଲା ନକ୍ସା ଗୋଟିଏ
କି' ବିସ୍ତାର !

ଏଇଲେ କିନ୍ତୁ
ଆକାଶରେ ପୂର୍ଣ୍ଣଚନ୍ଦ୍ର
ସମୁଦ୍ରରେ ପହଁରି ଆସୁଚି
ଲାଲ୍ ମୟୂର

ଉତୁରି ଝୁରି ମଲେବି ସମୁଦ୍ର
ପାଏନା ଆଲିଙ୍ଗନ ଚନ୍ଦ୍ରର ।
ସକଳ ଉଦ୍‌ବେଳନର
ବ୍ୟଗ୍ରତାର ଭଲପାଇବାର
ଏହା ହିଁ ଶେଷକଥା ବୋଧେ,
ଚାହେଁ କୁଦିପଡ଼ିବ ଚନ୍ଦ୍ର
ପାରେନା-
ନିଗୂଢ଼ ଯୋଉ ବୁଝାମଣା
ସେ ସବୁ କଳାକାରର କଳ୍ପନା

ଏମିତି ପୂର୍ଣ୍ଣଚନ୍ଦ୍ର ସାମ୍ନାରେ ଥରେ
ହାତ ଧରାଧରି ଆମେ
ଆଗୋଉଥିଲେ ପାଣିକୁ
ନିଜନିଜ ପୋଷାକ ପରି
ଫିଙ୍ଗି ଦେଇଥିଲେ ନାନାବିଧ ଭୟ
ହେଲେ, ସମୁଦ୍ର ବାରଣ କଲା
"ଭଲ କରି ଦେଖ
ଭିତରେ ତୁମର କି' ଅନ୍ଧାର
ତୁମେ କେଡ଼େ କ୍ଷୁଦ୍ର ।"
ଏ କଥା ସେ କହି ପାରିଲା- !

ଭଲ ପାଇବା ମାନେ
ନିଜ କ୍ଷୁଦ୍ରତାକୁ ମାପିବା,
ସେଇ ଲାଜରେ ମରିଲାଗିବା
ଦେଇ ନ ପାରିବାର ଅପରାଧରେ
ପସ୍ତେଇବା ।



## ଛାତିରେ ଲଦା ପଥର

ଛାତିରେ ଲଦା ହେଇଚି ପଥର
ପଥର ତ ନୁହେଁ, ପାହାଡ଼
ରୁକ୍ଷ, ଉତ୍ତପ୍ତ, କଂକରିଳ ।

ପଥରରେ ପାଣିଥାଏ, କହନ୍ତି;
ପାହାଡ଼ ଅଭ୍ୟନ୍ତରରେ ଝରଣା
ଥାଏ ବି ଅରାଏ ଲଟା, ଫୁଲ
ସାମାନ୍ୟ ବୃକ୍ଷ କେଇଟା-

କେମିତି ନିଃଶ୍ୱାସ କରେ ଚଳପ୍ରଚଳ
ଝୁଂକି ଆସେ ସ୍ୱପ୍ନ
ଆକସ୍ମାତ ଗଳିପଡ଼େ ମେଘ ଝର୍ଝର
ରକ୍ତ ପ୍ରବାହ ଅଟକି ଯାଏ
ବଥାଏ ପଂଜରା ହାଡ଼-
କାଁ ଭାଁ ପଥର ଫାଙ୍କରେ ପତ୍ରଟିକୁ
ଚୁମାଦିଏ, ବେଢ଼େଇ ଧରେ
ଧୀର ପବନର ଶିଶିଶିରି କୋଳ ।

ଏଣେ ସପ୍ତମୀର ଜହ୍ନ ଆଉ ବଉଦ
ଗୋଡ଼ିଆଗୋଡ଼ି ହଉଥାଆନ୍ତି-
ଦି'ଟା ପ୍ରଜାପତି ଯେମିତି !
ଦୂରରୁ ଶୁଭିଯାଏ
"ଛାଡ଼ି ଯାଆନା"-
ସ୍ୱରପୁରୁଷର, ସ୍ୱର ନାରୀର
କେଜାଣି ମିଶାମିଶି ଗୋଟେ ସ୍ୱର-

ବାରବାର ଯନ୍ତିହେବା
ପୁଣି ସ୍ମୃତିଟିକୁ ମଣ୍ଡିହେବା
ଏଇ କ'ଣ ଜୀଇଁବା ?
ଝୁରିହବା,
ଏଣେ ମୂର୍ଚ୍ଛି ନ ପାରିବା ?

❑

## ସବାଶେଷକୁ

ତୁମକୁ କାନ୍ଦି ଆସେନା
କେଜାଣି, ଆସେ କି ନାଁ
ମୁଁ କିନ୍ତୁ ଦେଖିନି ତୁମ କାନ୍ଦିବା ।

କଳ୍ପନାରେ, କବିତାରେ ଲେଖେଁ
ତୁମେ କାନ୍ଦିପାର
କାରଣ
କାନ୍ଦି ନପାରିବାଟା ବଡ଼ ଜଘନ୍ୟ !
ମୁଁ କିନ୍ତୁ କାନ୍ଦେ,
କାନ୍ଦେ ଚୁପ୍‌ଚାପ୍ ଅନ୍ଧାରରେ
ରାତି ଅଧରେ
କବାଟ କିଳି ନିରୋଳାରେ
କାନ୍ଥରେ ମୁଣ୍ଡପିଟି, ଚଟାଣରେ ଘୁଷୁରି
ଛାତିରେ ବିଧାମାରି-
କାନ୍ଦେ-
ଗଜାଗଛଟି
ସଂତ୍ରାସର କୁରାଢ଼ୀ ଧାରରେ
ରାସ୍ତାରେ ଲୋଟି ପଡ଼ିଲେ

ବନବାସୀଙ୍କ ଚୁଲିଘର
ସାଫ୍ ହେଲେ ନିଆଁ ଜିଭରେ,
ମାଟିପେଟ ଫୁଟାଇ
ଲୁହାକି ସୁନାକି ପାନ୍ନାହଉ
ଲୁଟିନେଲେ ବଣିକଦଳ
ଅଘନକ ଚୀରି ବିଦାରି ହୋଇଗଲେ
ପଥଘରୀ,
ଗାଁ ଗାଁ ମୋର ହାହାକାର
ଲୁହ ନ ଥାଏ
ଆଖିକୁ ନ ଦିଶିଲେ ବି ରକ୍ତଝରେ ।

ପୁଣି ମୁଁ ବି ରଡ଼ିପାରେ
ମାଆ ଭାଇ ପାଇଁ, ପିଲାଙ୍କ ପାଇଁ
ସମସ୍ତଙ୍କ ଆଗରେ ।
ପୁଣି ଗୋପନରେ ଜକେଇ ଆସେ
ଆଖି
ତୁମେ ମନେ ପଡ଼ିଲେ ।

ମୋର ଆଗେ ଯିବା ତ ନିଶ୍ଚିତ
ତୁମେ ବସିଥିବ, ମୁଁ ବାଟ କାଟିବି
ଆଖିମୋର ଖୋଲା କି ବୁଜାଥିବ
କହିପାରୁନି, ତଥାପି କପାଳ ଦିଶୁଥିବ
ସତେକି ପୋଛେ ବନମାଟି,
ଲୁହ ଠୋପାକ
ଖସିପଡନ୍ତା ନାହିଁ ତୁମଠୁଁ
ସେଇ ମାଟି ଉପରେ
ସେଇଠି ! ❑

## ସହଯାତ୍ରା

ଯିବାକୁ ଚାହୁଁଚ ଯିବ ।
ଯଦିଓ
ଏ ଯାଏଁ ସ୍ଥିର ହୋଇନି ମୋ ଯିବା ତାରିଖ ।

ଜାଂଗୁଲୁ ଜାଂଗୁଲୁ ରାତି
ଗଛଡ଼ାଳରୁ କାକର ଟପ୍‌ଟପ୍
ଝଡ଼ୁଥିବ ମୋ ଉପରଯାକ
ଥିବ ଶୀତ ପୋଷାକ-
କୋଉଠୁ ଶୁଭୁଥିବ ପ୍ରାର୍ଥନା, ଶ୍ଳୋକ,
ନଈ ଭିତରର ଜହ୍ନ
ଖୋଲି ଦେଇ ତା' ଦୁଆର
ଉହୁଁକି ଚାହୁଁଥିବ
ଥରକୁ ଥର,
ସାଂଗରେ ତୁମେ ଥିଲେ
କେଡ଼େ ନିଦକ !

ଅନ୍ତରୀକ୍ଷରୁ ମାଟି
ଅରଣ୍ୟରୁ ଜନପଦ
ଖିଏ ଖରାପରି
ଭେଦିଗଲା ବେଳେ ମୁଁ
ଦିଶିବି
ତୁମ ପାପୁଲି ଉପର

ଖୁଜୁବୁଜୁ କପୋତୀ
ନିର୍ଭୟ, ହସହସ ଉଜ୍ଜ୍ୱଳ ।

କୋଉଦିନ କଷ୍ଟିପତ୍ର ଟିକି
ଛିଣ୍ଡାଇଦେଇ
ମକ୍‌ଚି ଦେଲା ନିୟତି
କୋଉଦିନ ଘୋଟି ଆସିଲା ସକାଳୁ
ନାହିଁ ନଥିବା ରାତି
ଚିକ୍‌କଣ ଗାଲରେ
ପାଞ୍ଚ ଆଙ୍ଗୁଠିର ଦାଗ
ଉଗ୍ରତାର ରକ୍ତ ମୁଖ,
ଶୂନ୍ୟରେ ମଥା ଛେଚିଲା ବେଳେ
ମଜା ଦେଖୁଥାଏ ଯୋଉ ସୁହାଗ,
ଏସବୁ ମୋର ଭୋଗାଭୋଗ ।

ଆବୁଡ଼ା ଖାବୁଡ଼ା ମାଟି ପିଣ୍ଡାରେ
ଘୁଷୁରୁ ଥିଲାବେଳେ
ନୂଆ ଦିଶା ହଜିଗଲେ
ରାତି ଅଧ ଭେରେଣ୍ଡା ରଡ଼ି
ମାଆ ଜାକି ଧରିଲା ବେଳେ
ଛାଇଟିଏ ଦବି ଯାଇଚି ମନମାରି ।

ତେବେ ବି
ଗ୍ଲାନିର ପଥରବୋଝ ବୋହି
ଚାଲିବାକୁ ହବ ମୋତେ
ବୋହି ନ ପାରିଲେ ମୁଁ
ତୁମେ ବୋହିବ ଯେ !

❑

## ଅସ୍ତ କ'ଣ ?

(ବୋଉକୁ)

ଗୋରା କପାଳ ଉପରେ ନୀଳଚିତା
ଧଳା କାର୍ପେଟରେ ଏକୁଟିଆ ଅପରାଜିତା ।

କେବେ ଠୁଁ ଜଳିଗଲାଣି
ଅଥଚ୍ ଜୀବନ୍ତ ଅଛି
ଛପିଥିବା ଝରଣାର ଘପାହସ ପରି
"ମୁଁ ଅଛି", 'ମୁଁ ଅଛି' ଡାକ ପରି ।

ଗାଁ ଦାଣ୍ଡରେ କସ୍ତାଖଣ୍ଡେ ପିନ୍ଧି
ଚାଲିଯାଉଚି଼ ଯିଏ,
ଆଖିବୁଜି ଆଣୁଥିବା ଆକାଶତଳେ
ଲଣ୍ଠନଟିଏ ଧରି ଚାଲିଯାଉଚି଼ ଯିଏ,
ଲକ୍ଷ୍ମୀପୁରାଣ, ରାମ୍‌ଧୁନ୍
ଅର୍ଜୁନ-ବିଷାଦଯୋଗ ମୁଖସ୍ଥ ଯାହାର
ସେ ଦିଶଯାଉଚି଼
ପୋଖରୀ ମଝିରେ ଭାସିଯାଉଥିବା
ମାର୍ବଲ୍‌ର ବଉଦ ପରି ।

ପୁଅ ଝିଅଙ୍କୁ ହାଁ ହାଁ ବତାସରୁ
ବିଜୁଳିର ସାପଜିଭରୁ

ଦଦରା ଘଳପରି ଉହାଡ଼ି ଧରିଚି଼ କିଏ ?
ଜରା ଝାଡ଼ି ଦଉଚି କାହାକୁ ?
ତଥାପି ଶୀର୍ଣ୍ଣ ଗଛଟେ ପରି
ଠିଆ ହୋଇଚି଼ ମୋ ଅଗଣାରେ ?

ରୋଗ ଚ଼ରିଯାଇଚି଼ ମାଂସହାଡ଼
ବାଉଁଶକଣି ପାଲଟିଚି଼ ଶରୀର,
ପାଉଁଶ ମୁଠାକ ଅଣ୍ଡାଳୁଚି଼ ମୁଁ
କାହିଁ ମୁହଁ, ହାତ, ଗୋଡ଼ ?

ଅଚି଼ହ୍ନା ପାଉଁଶ ମିଶିଯାଉଚି଼
ମୋ ରକ୍ତରେ, ଚେତନାରେ
ଧକ୍‌ଧକ୍‌ରେ ଛାତିର ।

ତରଳି ଯାଇଥିବା ବାସ୍ତବତାକୁ
ଯଦି ଧରି ହଉଚି଼ ମୁଠାରେ,
ଅବର୍ତ୍ତମାନ ତେବେ କଅଣ ?
ମୃତ୍ୟୁ କ'ଣ ଏଡ଼େ ଅସହାୟ
ନିରର୍ଥକ ?

ନଥିବାଟା ଥିବାଠାରୁ ଅଧିକ ସତ,
ବେଶି ବେଶି ଘାରୁଥାଏ
ଘାଣ୍ଟୁଥାଏ
ଅସ୍ତ ନିଆଁର ଡ଼ହକ ?



# ଗୋପ୍ୟ ଚିଠିଟି

ଚିଠିଟେ ଲେଖ, ପ୍ଲିଜ୍ ।
ଥାଉପଛେ ଇ-ମେଲ୍, ଏସ୍.ଏମ୍.ଏସ୍.
ଚିଠି ମୋ ପାଇଁ ଜରୁରୀ ।

କୋଳି ମଂଜିପରି ଅକ୍ଷର ତୁମର
ମହୁଫେଣା ସତେକି
ତୀକ୍ଷ୍ଣ, ଶାଣିତ ଆବେଗ
ଉଲ୍ଲାସ ଅମୂଲମୂଲ ।

କେବେ ବି ତ ଏକାଠି ହେବାର
ଯୋଗ ନାହିଁ ଆମର,
ସାଇତି ରଖିବି
ଜହ୍ନରାତି ପରି ଉଛାଟ ହେବି ।

କହିସାରି ତରୁଣୀଟି
ଟାକି ବସିଲା-
ରାତି ପାହିଲା
ଡରିଡରି ଆସିଲା ଖରା,
ଅଫିସ୍ ଠିକଣା
ଚିଠି ପହଂଚିଯିବ ଏଥର

ସାଇକଲ୍‌ରୁ ଓହ୍ଲାଇଲା କି
ଡାକବାଲା ?
ସାରାଟା ବେଳ
ଆଖି ପହରାଦାର୍ ।

ପରଦିନମାନଙ୍କରେ
ରାତିକୁ ଜାକିଧରିଲା ଛାତିରେ
ନିଦକୁ ଫେରାଇଦେଲା
ଚେତିରହିଲା ଅନ୍ଧାରରେ
ହେଲେ, କାହିଁ ?
ଚିଠି ନ ଥିଲା ।

ଚିଠିପାଇଁ ଏତେ ହରବର
ଯେ କୋଉ ଯୁଗର ?
ପୁଣି ନିଉଛାଳି, ନ ପାଏଁ ପଛେ,
କହ, କହ, କ'ଣ କ'ଣ
ଥିଲା ସେଥିରେ-
ହଁ ଥିଲା, ତରୁଣଟି ଉତ୍ତର ଦେଲା-
କୋଉକାଳରୁ ଲେଖାହୋଇନଥିବା
ଧାଡ଼ିଏ କବିତା-
ଥିଲା ଲାଲ୍‌କଇଁପରି
ଗୋଛାଏ ସ୍ୱପ୍ନ,
ଆହୁରି କେତେ କଅଣ,
ତୁମର ଓ ମୋର ଅଭ୍ୟନ୍ତର ବିସ୍ତାର
ଯାହା ଗୋଟାପଣେ
ତିନ୍ତାଇଦିଅନ୍ତା ତୁମକୁ
ଲାଜରେ, ଶିହରଣରେ
ବାରମ୍ବାର ।

ବେଳେବେଳେ
ଚିଠିଟି ପଶିଆସେ ତନ୍ଦ୍ରାକୁ
ବଉଳଫୁଲ ବାସ୍ନାରେ
ଚହଟିଯାଏ ଶେଯ
ଏତେବେଳକୁ ଯଦିଚ
ମରି ସାରିଥାଏ
ସେ ଚିଠିଲେଖାଳି ଜଣକ ।

ଚୁନ୍‌ଭୁତ୍ ମନ
ଝାଉଁଳି ପଡ଼େ ବୃନ୍ଦାବଣ
ତରୁଣୀଟି ଭାବେ
ହଜିଲା ଚିଠି ଗୋଟିକ
ରହିଥିବ ତ ନିଶ୍ଚେ
କୋଉଠି ନା କୋଉଠି !

ହଜିଯାଇଚି ସିନା,
ମରିଯାଇନି ତ
ମୁର୍କି ହସିଦିଏ ତରୁଣୀଟି ।



## କାନ୍ଦନା, କ୍ଷମା

ତୁମେ କାନ୍ଦିଲେ ସେ କଷ୍ଟ ପାଆନ୍ତି
କାନ୍ଦନା ।
ଧାତବ ଅସ୍ତ୍ରଧରି ତୁମ ହୃଦୟ ସହ
ଖେଳନ୍ତି ଯେଉଁମାନେ
ତାଙ୍କୁ କ୍ଷମାକର ।

ତୁମ ଭାତଗୁଣ୍ଡାକୁ ଛଡ଼େଇ ନିଅନ୍ତିଯିଏ
ଅହରହ ହତ୍ୟା, ଲୁଣ୍ଠନ, ନିଷ୍ଠୁରତାରେ
ତୁମକୁ ଟାଳିଦେବାକୁ ଚାହାନ୍ତି ଯିଏ
ସେମାନେ ସବୁ ସାର ନା ଅସାର ?
ତାଙ୍କୁ ଚିହ୍ନିପାରନ୍ତ ଯଦି
ଚ଼କ୍ରବାଳ ହସହସ ଦିଶନ୍ତା ।
ତୁମେ କିନ୍ତୁ ଚ଼ିହ୍ନିପାରନା ।

ସ୍ୱପ୍ନରେ ଜଡ଼ିଯାଇଚ଼ ଯଦି
ତୁମେ ବେକୁବ୍ ।
ମାଟିପରି ସହିଗଲ ତ
ତୁମେ ପାଦତଳେ ରହିବ, ସବୁଦିନ ।

ଅବଶ୍ୟ, ଘାସ ଉଠୁଥିବ ଅନବରତ
ପାଦତଳେ ଲୁତୁପୁତୁ ସବୁଜତା ।
ମଂଜିପୁଣି ତଳକୁ ଫୁଟିବ
ଉପରକୁ ଛାଟିଦବ ହାତଗୋଡ଼
ଅନ୍ଧାରରେ ସ୍ୱାଗତ-ସ୍ୱର ଭଳି
ପବନରେ ଦୋଳି ଖେଳିବ ।
ତା' ଅନ୍ତରଙ୍ଗ ସ୍ୱର ଶୁଣିଲେ
ତୁମେ ମୁର୍କି ହସିବ ।

ଯଦି ଟଙ୍କା, ସୁନା, ସଂପତ୍ତିକୁ ନ ଅନାଅ
ଅନ୍ଧକେ ବଂଚିରୁହ ।
ନିହାତି ଶ୍ରମରେ, ନାମରେ, ମଣିଷପଣିଆଁରେ
ବିଶ୍ୱାସରଖ ଯଦି
ଦୁଃଖଭୋଗ, ବଞ୍ଚିଯାଅ ।
କିନ୍ତୁ କାନ୍ଦନା ଜମା
କଷ୍ଟ ପାଇବ ପ୍ରିୟଜନ ତୁମର ।

❑

# ଆକାର

ହିଂଜଳଫୁଲକୁ ଗୁନ୍ଥି
ଗହଣା କଲି,
ବେଣୀରେ ଲଟକାଇଦେଲି ସ୍ୱପ୍ନ
ଏଣେ, ଅଜାଡ଼ିପଡୁଥିବା ବର୍ଷାବୁନ୍ଦାକୁ
ସାଉଁଟୁ ସାଉଁଟୁ ମାଟିରୁ
ଖସି ପଳାଇଗଲା ସମୟ ।

ରତ୍ନ ପଦକଟେ ଲଗାଇବି ହୃଦରେ ବୋଲି
ଚେ଼ତିଲାବେଳକୁ ମୁଁ
ବର୍ଷାପରି ବୋହିଯାଉଚ଼ି ଲୁହ
ସେମାନେ ଚାଲିଗଲେଣି
ଯେଝା ସମୟକୁ ଯେଝା କାନ୍ଧରେ
ବୋହି,
ହୃଦୟ ନିସ୍ତବ୍ଧ
କେହି ନାହିଁ-ଥିଲା କି କିଏ
ଯିଏ ଆଜି ନାହିଁ ?

କୁନିପୃଥିବୀ ଉଇଁଥିଲାଦିନେ
ମୋ ପାପୁଲି ମଝିରେ
ଲାଲ୍ ପତ୍ରଟିଏ ହୋଇ

କେତେ ଭାବରେ ବାଣ୍ଟିହୋଇଚି ସେ-
ଅରଣ୍ୟ, ଉପତ୍ୟକା, ମରୁଭୂମି
ପର୍ବତ, ନଈ
କୋଟିକୋଟି ରୂପରେ
ଭାଂଗୁଛି, ଗଢ଼ିହେଇଚି
ଅଥଚ୍ ଆକାର ବୋଲି କିଛିନାହିଁ ।

ଆକାରକୁ ଧରିବାକୁ
ମୁଁ ହାଇଁପାଇଁ
ଏଣେ ପର୍ବତ ପ୍ରମାଣେ ପୋଥିଭିତରେ
ଶୋଇ ରହିଚ଼ି ଜୀବନ
ପୃଷ୍ଠାଏ ବି ଖୋଲି ପାରିଲି ନାହିଁ ।

କେତେ ଢ଼ମ, ଛଇଛଟକ, ଛଳ
ମୁଁ ଅନାଇଁନାହିଁ ତେଣିକି
ତଥାପି, କୁମ୍ଭାଟୁଆର
ନୀରବ, ଲାଲ୍ ଆଖକୁ
ଭୁଲି ପାରିନି ।

କାହିଁକି ଏମିତି ଅପଦାର୍ଥ ହେଲି ମୁଁ ?
ନଈ ସେପାରି
ପହଂଚିଗଲାପରେ
କି' ଉତ୍ତର ଦେବି ତୁମକୁ ?

❑

# ଅନଭିବ୍ୟକ୍ତ

ତୁମେ ଆସୁଛ ଆସୁଛ ଲାଗିଲେ ମୁଁ ଲୁଚିପଡ଼େ
କାଳେ ପାପରା ପୋକଖିଆ ହାଡ଼ମାଂସ
ସମ୍ଭାଳି ପାରିବ ନାହିଁ ତୁମ ଭାର,
ଧସି ପଡ଼ିଥିବା ରକ୍ତର ଖଳଖଳ
ପିନ୍ଧାଇ ପାରିବ ନାହିଁ ସଜ, ବେଶ, ସୁନ୍ଦର ତୁମକୁ
ଟାକୁଆ କୁଆଁ ଫିଟେଇବନି ଜମାରୁ
କାଳେ ଥରି ଉଠିବ, ମରି ଲାଗିବ
ମୋର ଉଚ୍ଚାର
ତୁମେ ଜାଣିପାର,
ଏମିତିରେ ତୁମେ ବଡ଼ ନିଷ୍ଠୁର ।

ଆଜି ଗୋଟାପଣେ ଘଷିମାଜି
ତିଆରିଛି ବିଶ୍ୱାସ କର
ଡର ଛାଡ଼ିଛି, ଲାଜ ଛାଡ଼ିଛି
ରକ୍ତରେ ନିଆଁ ପୋଇଛି,
ପାହାନ୍ତାର ସ୍ତବ୍ଧତା
ତାଳପତ୍ରରେ ଛପିରହିଥିବା ଚଞ୍ଚଳତା
ଚୁପ୍‌ଚାପ୍ ଖସିପଡୁଥିବା ତାରାଙ୍କୁ
ଗୋଟେଇ ନଉଥିବା ମହାନଦୀର ମୁହାଣ

କଢ଼ର ଫିକା ବାସ୍ନା
ମହାଶୂନ୍ୟରେ ଚମ୍‌କି ଯିବା କଣିକା,
ଖୁବ୍ ଏକୁଟିଆ
ସବୁଦିନର ଥଣ୍ଡା ଶେଯରେ
ବନ୍ଦ ଘରର ବାଙ୍ମୟତା
ଏମିତି ବେଳେ, ମୁଁ ହାତ ବଢ଼ାଉଛି ତୁମକୁ ।
ବ୍ରହ୍ମାଣ୍ଡମୟ ତୁମ ଖେଳ
ଅଚିହ୍ନା ଛାୟାପଥ ମଝିରେ ତୁମଘର
ଦିଗ୍‌ବିଦିଗ ଚେତନାର ପ୍ରଶ୍ନାକୁଳତା
ବୁଝାଇ ସାରିଛି ମୋତେ
ଅପାଙ୍‌କ୍ତେୟତା ମୋର ।
ଡାକିଲେ ଆସ, ନ ଡାକିଲେ ବି ଆସ
ଘୂରିବୁଲ, ଅଥୟ କର
ଅଥଚ, ଅଲେଖା ରହିଯାଏ ଧାଡ଼ିତୋଡ଼ିକି ମୋର
ତୁମ ଅଦଉତିରୁ ହିଁ
ସବୁଥର ।

❑

# ଶେଷଯାଏଁ

କହି ହବନି କାହାକୁ ।
କଥା ଦି' ପଦ
ପହଁଚୁଚି ମୋ ଧମନୀରେ
ତମାମ୍ ଶୂନ୍ୟରେ ଉଡ଼ିବୁଲୁଚି
ସୁନା ରେଣୁ
ଡ଼ାଳରେ ଉବୁକି ଉଠୁଚି
ସହସ୍ରେ କୁଆଁ
କେବେ ବା ଘରଚଟିଆ
ଅଚାନକ ପଶିଆସି
ଥଣ୍ଟ ମାରୁଚି ଦର୍ପଣରେ
ସୁଖକୁ ବାଣ୍ଟିବାକୁ ହୁଏ ପରା !

କହନ୍ତି, ତୁମକୁ ଯେ,
ଏତେ ଗହଳ ଚହଳ ଝିଂଝଟ ଭିତରେ
ମୋ ପାଇଁ ବେଳଥିବ ତୁମର !
ମୁଁ ହସିଲି କି କାନ୍ଦିଲି କି ଗଡ଼ିମଲି
ସେଥିକୁ କି ଗରଜ !
ନ କହିଲେ ବାଣ୍ଟିହଉନି ଅଥଚ !
ଅଧରାତିର ବିଦୀର୍ଣ୍ଣ ଅନ୍ଧାରକୁ
କହିବି କି ?

ଝଲ୍‌ମଲ୍ ବିଜୁଳି ଆଲୁଅ ଡ଼ରରେ
ସେ ଲୁଚିବସିଚି ଗଛ ସନ୍ଧିରେ ।
କୁଆଁ ତାରାତ ଏଠି କୋଉଠି ଦିଶୁନି
ନାଚି ଲାଗିଥିବ କୋଉ ଜଙ୍ଗଲ ଦାଢ଼ରେ
ତାକୁ ଇ ଡାକିଆଣିବି ତା' ହେଲେ-
ଦିଶୁନାହାନ୍ତି ତ ଯେଉଁମାନେ ପାଖରେ ଥିଲେ !
ଶୁଖିଲା ବିଲପରି ଫଡ଼ାଫଡ଼ା ହେଇଯାଉଚି ଭିତର,
ଏପାରି ସେପାରି ଆକାଶ
ଛାୟା ପଥମାନେ ହିସାବରଖନ୍ତି
ମଣିଷର, ତା' ଉଭାସନର ?

ସାରା ପୃଥ୍ୱୀର
କ୍ଷେତ, ବଣ, ଖଣିଖାଦାନକୁ
ବାଣ୍ଟିନେଇ ଗିଳିସାରିଥିବା ଅଭିସନ୍ଧିକୁ
କ'ଣ କହିହବ ଏସବୁ ?

ଶଂଖରଂଗର କଇଁ
ଝିଲ ମଝିରେ ଦିନଗଣୁଚି
କୋଉଦିନ ଅଜାଡ଼ି ପଡ଼ିବ
ତା' ମୁହଁ ଉପରେ ନାରଖାର ପାହାଡ଼
ତାର ବା ମୁଡ୍ କାହିଁ, ଶୁଣିବ ?

ନ ଶୁଣନ୍ତୁ କେହି
ଯାଉଚି ଏଥର
ମାଟି ଖୋଳି ପୋତି ଦେବି
ସେ ଦି' ପଦ-
ସେ ଚେର ଧରିବ, ଗଜୁରିବ...


# ଆମେ ଦୁହେଁ ନଥିବା

କଲମ, କାଳିର  ଓଜନ କେତେ  ?
ସାରାଟା ଦିନ ମୁଁ ବୋହି ଚାଲିଚି ଯେ !

ବାଳପରି କଳା କାଗଜ ଖଣ୍ଡେ
ଗିଳି ପକାଉଚି ସବୁ
ଭିତରର ସ୍ୱର ବାରିହଉନି
ଫୁଟି ଉଠିବାର ଝୁଂକ୍
ମୋ ଛାତିକୁ ଫାଳଫାଳ ଚିରୁଚି ।

କର୍କଶ ଚାହାଣି ଓ ଚରିତ୍ର
ଖେଦିଯାଉଚି ଚାରିଆଡ଼
କିଏ ଶୁଣିବ ଭଲା
ଲୁଚିଥିବା କଥାପଦକ ତୁମର ।

ସେ ଦିନ, ବଡ଼ଗୋଟେ ଶାମୁକା ଆକାର
ପାଚିଲା କାଗେଜି ରଂଗର ପକ୍ଷୀଟି
ପକ୍ଷୀନୁହେଁ ହଳଦିଆ ଗୋଲାପଟି
କୁନିମଥା ବୁଲାଇ ବୁଲାଇ
ଖୋଜୁଥିଲା କାହାକୁ ।

ବଇଁଶୀର ଘୁମଘୁମରେ
ଧରାପଡ଼ିଯାଉଥିଲା
ତା' ଆଖିର ଗୋପନୀୟତା ସବୁ ।
ସେ କହିଲା ନାହିଁ କିଛି
ପ୍ରକାଶି ପାରିଲିନି ମୁଁ ବି
କେତେବେଶୀ ତାକୁ ଭଲ ପାଇଛି !
ସ୍ୱରରେ ଫିଟି ପାରେନା ଯାହା
ତା' ବୋଧେ ଭଲପାଇବା
ସକଳଠୁଁ ଛଡ଼େଇ ଆଣେ ଯାହା
ତା' ବୋଧେ ଭଲ ପାଇବା
କିଛି ବି ବୁଝିବାକୁ ଚାହେଁନା ଯାହା
ତା' ବୋଧେ ଭଲପାଇବା ।

ହୃଦୟରୁ କରନାଳର ନୀଳକଇଁ ଯାଏ
ଲମ୍ବିଚି ଯୋଉ ଅବନା ସେତୁ
ତା' ବୋଧେ ଭଲ ପାଇବା,
ଦୂର ଉପତ୍ୟକାର ସୀମା ଯାଏଁ
ମାଡ଼ିଯାଇଚି ଯୋଉ କୁହୁଡ଼ି ଧାରେ
ତା' ବୋଧେ ଭଲ ପାଇବା ।

ହୁଏତ ବାଳ ପରିକଳା
ସେ କାଗଜ ଫର୍ଦ୍ଦରେ
କୋଉଦିନ
ଫୁଟିପଡ଼ିବ ଅକ୍ଷରମାନ,
ପଢ଼ିବାକୁ ଆମେ ଦୁହେଁ ନଥିବା ।



# ଫେରନ୍ତା ବାଟ

ଏଥର ଫେରନ୍ତା ବାଟ
ଦିନ ରତରତ
କଟା ଗାଜରର ରଂଗ
ବୋଳି ହେଇଚି
ଥାକ ଥାକ ବଉଦ ।

ଗହଗହ ଆତ୍ମୀୟ
ଆଦର, କୋଳାକୋଳି, ସ୍ମରଣ
କୁଣ୍ଢେଇ ଧରୁଚି କାହିଁକି ?
ଏଇଲେ
ଏକା ହେଇଯିବା କଥାଟି !

ଘରର ନକ୍‌ସା
ପରିବାର, ପରିଣତି
କିଛି ଅବଶ୍ୟ ଜଣାନାହିଁ
ତଥାପି
ମିଳିବ ତ ପାଣିମୁନ୍ଦାଏ, ଚେନାଏ ହସ-
କେଜାଣି, ଦିନେ ନା ଦିନେ ତ
ନିଜ ଦେହଟାକୁ ପିଠିରେ ପକେଇ,

ଯାବତ ଯନ୍ତ୍ରଣାକୁ ମୁଣ୍ଡେଇ,
ଭୋକୀ, ଶୋଷୀଙ୍କ ହାହାକାରରେ
ଆଂଜୁଳା ଭରି
ଚାଲିବାକୁ ହେଇଥାନ୍ତା
ନଇଁ ନଇଁ,
ପାଖ ହେଉ କି ଦୂର
ଘର ତ ଘର, ।

ମନ ବଳୁନି ଛାଡ଼ିଯିବାକୁ ତୁମକୁ
ଗୋଟେ ଖାଲିପଣ
ମଚ୍ଛିଦେଉଚି ଅଭ୍ୟନ୍ତର
ତୁମେ ବି କଣ
ଏମିତି ମତେ ଝୁର ?

ନାଁ ତୁମେ କଠିନ
ଦେଖିଦେଖି ସହିସହି
ସତକୁ ସତ ପଥର ?

ଚୁନା ଚୁନା ସମୟ
ବାଣ୍ଟି ହେଇଯାଇଚି
କୁଆଡେ ବୋଲି କୁଆଡ଼େ
ସେ ଆମର ନୁହଁ-
ଘେରିପକାଏ ତଥାପି
ଭର୍ତ୍ତି କରେ ଛାତିଏ କୋହ ।

❑

# ମର୍ମର ଭ୍ରମ

ଗୋଚର ନୁହେଁ କାହାକୁ
ସମସ୍ତେ ଧରିନିଅନ୍ତି ଅଥଚ
ସେମାନେ ଚିହ୍ନନ୍ତି ତାକୁ ।
ଧନ୍ଦି ହୁଅନ୍ତି
ଆକୁଳ ଅନୁନୟ ଶୌର୍ଯ୍ୟବୀର୍ଯ୍ୟ ବାଜି ରଖି
ବାଜି ରଖି ନାରୀତ୍ୱ, ପୁରୁଷପଣ

ରାତିଦିନ ଉଜାଗର, ଅନ୍ୟମନସ୍କତା
ଅନ୍ତରାଳର ସତ୍ୟତା
ବୁଝୁବୁଝୁ ସରିଯାଏ
ସାରାଟା ବଞ୍ଚିବା ।

ଘଞ୍ଚବଣରେ
ଗଛପତ୍ର ଗହଳରେ ଖରାଛାଇ, ଛାଇଖରା
ସୁନାହରିଣ ସତେକି ମତ୍ତଭୋଳ
ଲୁଚାଛପା ଖେଳ
ଆକାଶେ ବିଜୁଳି ନାଚେ
ନକ୍ସା ତାର କଫି ଚେରର ।

କିଏ ପାଏ କିଏ ଧରେ
ନ ପାଏ ନ ଧରେ ଯିଏ
ଝୁରି ମରେ ।
ଯୁଆଡ଼େ ଚାହିଁଲେ ଦିଶେ
କାଂକ୍ଷିତ ସେ ରୂପ,
ହୃଦୟ ଓ ଆଖି
ତିଆରନ୍ତି ମୂର୍ତ୍ତି
ଜୀବନ୍ୟାସ ମନ୍ତ୍ର ପଢ଼ନ୍ତି
ଉଦଗ୍ର ବାହୁରେ
ଛାତି ପତାଇ ଜଡ଼େଇ ଆଣିଲା ବେଳେ
କିଛି ନଥାଏ କେବଳ ଶୂନ୍ୟ ଛାତି ।

ନିଜେ ନ ପାଇବାର ଆତଙ୍କ
ସେ ନ ଆସିବାର ଆତଙ୍କ
ହୃତକମ୍ପ ଥରହର
ଆଘାତ ରକ୍ତ ଜର୍ଜର
କହି ହବନି କାହାକୁ
କି ଦାଉ ସାଧେ ସେ ନିର୍ମମ
ନିପଟ ଖେଳୁଆଡ଼
ଶଙ୍ଖ ମଲମଲ ଭ୍ରମ !

❑

# କହିଲେ ନ କହିଲେ

ଅନୁଭବର, ଉପଲବ୍ଧିର
ଟୁକୁରା ସବୁକୁ ଗୋଟାଏ
ନଥିବା ଧାଡ଼ିମାନଙ୍କୁ ଖଞ୍ଜିଲାଗେ-
ସେ ଟୁକୁରାମାନଙ୍କରେ ।
ଛୁଆଟେ ପରି ଖେଳେ
ସେ ଟୁକୁରାମାନଙ୍କୁ ଧରି କାହିଁକି ଖେଳେ ?

କ'ଣ ଗୋଟେ କରିବାକୁ, ତୋଳିବାକୁ
ଖେଳୁଥାଏ କବି
ବେଳେବେଳେ ଉତୁରୁଥିବା ଉଲ୍ଲାସରେ
ତ ବେଳେବେଳେ ତୀକ୍ଷ୍ଣ ଅସ୍ଥିରତାରେ ।
ଝଡ଼ ଯେମିତି କ୍ରମଶଃ ଠୁଳୋଉଥାଏ ନିଜକୁ
ଅସ୍ତବ୍ୟସ୍ତ ହଉଥାଏ,
ଠିକ୍ ସେମିତି ଗାରଉଥାଏ ସେ
କ'ଣ ଗୋଟେ ତିଆରିବ ବୋଲି ନିବିଷ୍ଟ
କେଜାଣି ମଣିଷଠି ଡ଼େଣା ଖଂଜୁଥାଏ !

ବାସ୍ତବତାକୁ ନିଜ ଅଭିଳାଷରେ ସଜାଏ
ବାକ୍ ରହିତ ଗୀତରେ, କବିତାରେ-
ଯେ ରାତିଅଧର ଅଭିସାର କବିର,
ଏଣେ ଜୀଇଉଠେ ପରୀଜଗତଟେ
ଶବ୍ଦଚିତ୍ରରେ । ❑

## ଅନ୍ଧାର ସାତରାତି

ଏକରାତି ହେଉ ସପତରାତି
କିଏ କହିଥିଲେ ଟି ?
ପ୍ରଚ଼ଳିତ ଧାରାରେ ସତୀନୁହଁକି
ଅସତୀ ନୁହଁ ସେ
ସଚ୍ଚରିତ୍ରା, ହୃଦୟବତୀ
ଦୁଇପାଦ ଆଗକୁ ପକାଏ ତ
ପଛକୁ ଚାହେଁ
ଲୁହରେ ବତୁରେ
ଅତୀତର ଅବିଚାର ସବୁକୁ
ପୋଛିଦେବ ବୋଲି ଆଗଭର ହୁଏ–

ବ୍ରହ୍ମା, ବିଷ୍ଣୁ, ଶଂକର
କେହି ଠିଆହେବେନି ତା'ପାଖରେ
ସେ ଶବ୍ଦାବ୍ଦୀ ଶତାବ୍ଦୀ ଦୂରର,
ତଥାପି, ଯେ ଅନ୍ଧାରରେ
ସେ ହାତ ହଲାଏ, ପାଦ ଟେକେ
ନାଚୁଥାଏ ତା'ର ଅନ୍ତର୍ମଗ୍ନା କିଶୋରୀ ।

ବୁଡ଼ି ଯାଉଥିବା ଡଂଗାଭିତରୁ
ଡ଼େଇଁପଡ଼େ, ପହଁରିଯିଲେ

ପରାଣ ହାତଗୋଡ଼-
ପୂର୍ବାଶାର ନାଲି ବାଇଗଣି
ବହଳ ରକ୍ତର ଗାରକୁ ତକେଇ ଥାଏ-
ଦୂରରେ ଗୋଟେ କାଚ଼ର ସମୁଦ୍ର
ଭାଙ୍ଗି ପଡୁଥାଏ ଯେମିତି
ସେ କାନଡ଼େରେ ।
ଜାଣେ, ଆଲୋକ ଦିନେ ଆସିବ
ଉଦ୍ଭାସିବ ସଚ଼ରାଚର-
ବୟସର ବେତାଳକୁ ଠେଲିଦେଇ
ଯୁବାପାଲିଟି ଯିବ ଯେ ପୃଥ୍ୱୀ ।
ସେ ଆଣ୍ଠୁ କରେ
ସନ୍ତାପର, ସତପଣର
ସାରା ପୃଥ୍ୱୀକୁ ଆଲିଂଗି ନେବାର
ବ୍ୟାକୁଳତା ତା'ର
ଯେ ତପସ୍ୟା —
ଫଳିବ, ନିଶ୍ଚେ ଫଳିବ ।

❑

# କାଠ ପିତୁଳା

ମିଂଜିମିଂଜି ଆଲୁଅ
ଶୂନ୍ୟ ପ୍ରେକ୍ଷାଳୟ
ମଞ୍ଚରେ କାଠ ପିତୁଳା ।
କାଠ ତିଆରି ପଂଜରାଟିଏ ଲାଗିଚି କି ତା'ଠି ?
ସାଂକୁଡ଼ି ଯାଉଚି ଛାତି
ଶିହରି ଉଠୁନି ଦେହ
କେମିତି ?
ୟେ କାଠ ପିତୁଳା ତ ନିର୍ଜୀବ ନୁହଁ !
ପିତୁଳା ଖୋଜୁଚି କାହାକୁ
ଗହଗହ ପ୍ରେକ୍ଷାଳୟରେ ଥିଲେ ସେମାନେ
ଚିହ୍ନିଚ, ଜାଣିଚ କାହାକୁ ସେଥିରୁ ?

ବଣ ଗୁଣ୍ଡୁଚିର ଗୁଲ୍‌ଗୁଲ୍ ଆଖିପରି
କୋଳିଟିଏ ଖସି ପଡ଼ିଲା କୋଳରେ
ଚାଉଁକିନା ଚମ୍‌କି ଉଠିଲା ପିତୁଳା
ଚଢ଼େଇଟିଏ ପାଲଟିଗଲା ସେ ନିଜେ
ସୁର୍‌କିନା ଉଡ଼ିଗଲା
ବଡ଼ଗଛର ଛନ୍ଦାଛନ୍ଦି ଡ଼ାଳକୁ,
ମହୁରଂଗର ଡ଼େଣାରେ ତା'ର
ବର୍ଣ୍ଣମୟ ଚିତ୍ର

ଚିହ୍ନିପରିବ ଭଲା କୋଉ ଚିତ୍ରକର !
ସିନ୍ଦୂର ରଂଗର ପତ୍ରଟିଏ ଗଳୁରୁଥିଲା ଡ଼ାଳରେ
ସବୁଜରୁ କଳା ପାଲଟି ତା' ହଳଦିଆ ହବ
ଖସିପଡ଼ିବ, ଏଇଆ ତ !
ଚଢ଼େଇ ଜାଣିଥିଲା
ଗୋଟିଏ ଶୂନ୍ୟତାରୁ ଆଉ ଗୋଟିଏ ଶୂନ୍ୟତାକୁ
ଲମ୍ବିଥିବା ଡ଼ୋର
କେବେ କାହାକୁ ଦିଶିଚି ଭଲା–
ଅଥଚ ଏତେ ସବୁ ବିସ୍ତାର
'ଉହୁ' 'ଉହୁ' ଝରଣାର,
ନବଯୁବତୀର ଛଳହସ, ଲାଜ,
ବର୍ଷା ଋତୁର ଥମ୍‌ଥମ୍ ସବୁଜ,
କଣେଇଁ ଚାହିଁଲା ଚଢ଼େଇ
କାଠ ପିତୁଳା ଅଛି କୋଉଠି ?

ହୃଦୟଭରା ଭଲପାଇବାର ଉତ୍ସମାନଙ୍କୁ
ଦୃକ୍‌ପାତ କରିନାହିଁ
ତା'ର ନାନାବିଧ କୃପଣତା ।
କେତେ କେଜାଣି ଖାଲ ମଂଚସାରା
ଅନାଇଁ ହୁଏନା
କାଳେ ସାମ୍ନାସାମ୍ନି ହେଇଯିବ
ସେଇ କୃପଣତାର କଳାମୁହଁ,
ବିଗତ ସମୟ, ପ୍ରାର୍ଥନାରେ, ଲୁହରେ
ସେ ସମୟକୁ, କେହି ଭରିପାରିବ, କହ !

ଚଢ଼େଇଭାବେ, ବେଶ୍ ଭଲ ଯେ ହଜିବାପଣ
ମିଛ ଭିଆଣ,
ବେଶ୍ ଭଲ ଡ଼େଣାର ବିମୁକ୍ତ କଂପନ

ଏଣିକି କାଠ ପିତୁଳା ଉଠିବ, ନିଃଶ୍ୱାସନବ
ଗୋଟିଏ ସମାଧିରୁ ଆଉ ଗୋଟିଏ ସମାଧିଯାଏ
ଚାଲି ଚାଲିଯିବ-
ସେ ଜାଣେ, ଶ୍ମଶାନ ବି
ଆରାମଦାୟକ ଶେଯଟିଏ
ଫଳରୁ ବୀଜ, ବୀଜରୁ ବୃକ୍ଷ
ଚଢ଼େଇଟି ବୀଜବାହକ ।

ୟା' ଠୁଁ ବଳି କଅଣ ସତ୍ୟ
କଅଣ ବା ଶ୍ଳାଘ୍ୟ ?
କାଠ ପିତୁଳା ବୁଝିଚ଼ି, ଭୋଗିଚି, ଉଡ଼ିଚ଼ି
ଦିଗ୍‌ବିଦିଗ ଛୁଟିଚି,
ଉଦ୍ୟତସେ, ଏଇଲେ ମଞ୍ଚରୁ ଓହ୍ଲାଇବ
ଆଉ, ହଁ, ମହମହ ପବନର ଲୁଗାପିନ୍ଧି
ସମାଧି ଦିଗକୁ
ଚାଲିଚାଲି ଯିବ ।



## ଜନ୍ମରୁ ଯୁବତୀ

ଗଛର ଗଣ୍ଡି ଭିତରୁ କି କାପ୍ତାବସାରୁ ବାହାରି
ଉଠିଆ କ୍ଷେତ ମଝିରେ
ଠିଆ ହୋଇଗଲା ସ୍ତ୍ରୀଲୋକଟେ ।
କଅଁଳ, ତମ୍ୱାରଂଗର ଛୁଞ୍ଚିପରି
ପତଙ୍ଗମାନେ
ଉଡ଼ିପଳାଇଲେ ମାଟିରୁ
ବଣବୁଦାକୁ ଉଡ଼ିଗଲେ
କି ଦଳକ ଯାକ
ସେଇ ଗୋଟିଏ ବୁଦାରେ ହିଁ ଘୂରିବୁଲିଲେ– ।
ବୁଦା ସେପଟ
ଘରର ଝର୍କାକାଚ଼
ଦିଶିଗଲା ଦେବୀଙ୍କ ଆଭାମଣ୍ଡଳ ସତେକି
ସେଇ ଡେର୍ଛା ଖରାରେ ।

ମେଳ ଖାଉ ନଥିବା ଇଚ୍ଛାମାନଙ୍କୁ
ବୁଝାଇବାରେ ଅଧାଦିନ କଟିଗଲାତ
ପ୍ରଲୋଭନକୁ ଆଡ଼େଇ ଦେବାରେ
ବାକୀ ଅଧକ ଦିନ,
କିନ୍ତୁ ଖରାଯେ

କୋଉ ଜାଗାରେ, କୋଉ ବାଗରେ ପଡ଼େ
ଜାଗାଏ ଜାଗାଏ ତ
ପଡ଼େ ନାହିଁ ଆଦୌ
ଏ କଥା କିଏ ନ ଜାଣେ ?

ସ୍ତ୍ରୀ ଲୋକଟି ଜନ୍ମରୁ ଯୁବତୀ
ଉଠିଲା ଏଥର, ଅଳସ ଭାଙ୍ଗିଲା
କେତେ ପୁରାଣ, ଲୋକକଥାର
ଅଖଳା ଅନୁଭୂତି,

ଆଶା, ଆନନ୍ଦ ଆଉ କ୍ଷମାର
ଝୋଟି ଚିତାରେ
ପୁଷ୍ପିତ ତାର ପାଦ
ଉଜ୍ଜ୍ୱଳ ଆଖିରୁ ବିକୀରିତ ମହିମା
ମଣ୍ଡିଦେଲା ସେଇମାନଙ୍କ ମୁହଁକୁ
ଯେଉଁମାନେ
ଆଗେଇ ଯାଉଥିଲେ ପାଦେପାଦେ
ସୂର୍ଯ୍ୟାସ୍ତର ଦିଗକୁ ।



# ସମୟର ଦର୍ପ

କଲିଜାରୁ ଖଣ୍ଡେ ଛିଣ୍ଡି ପଡ଼ିଚି ତା'ର
ମହାନଗରୀର ଫ୍ଲାଟ ଭିତରେ କୋଉଠି,
ସେ ଉଡ଼ିପଳାଇ ଆସିଚି ସେଠୁ
ଗଡ଼ିଗଡ଼ି ବାଉଳୁଚି ଉଜଳି ଉଠୁଚି
ତା' ମଲାବୋଉର ମୁହଁ-

କଲିଜା ଖଣ୍ଡକ ଯେ
କାହିଁ ଦୂରରେ ଧକ୍ ଧକ୍ କରି
କଂକ୍ରିଟ୍ ପାଲଟି ଯାଉଚି କ୍ରମଶଃ
ସେ ବୁଝିପାରୁନି,
ଗୋଟେ ଆଖିରେ ନିଦ, ଆର ଆଖିରେ
ଭଂଗାରୁଜା ସ୍ୱପ୍ନଙ୍କୁ ଖୁନ୍ଦି
ହସୁଚି, କାନ୍ଦୁଚି କିଏ
ସେ ବାରିପାରୁନି—
ଅପନ୍ତରାରେ କି ଥୁଣ୍ଟାବିଲ ମଝିରେ
ତା'ର ସନ୍ଦେହ ହୁଏ
କଲିଜାଖଣ୍ଡକ କୋଉଠି !
ହଠାତ୍ ଆକାଶ ଫଟାଉଥିବା
ପରକ୍ଷଣରେ ଶୁଭିଶୁଭୁ ନଥିବା ସ୍ୱରରେ
କୋବଲାଏ କିଏ

ବାରବାର ପଚାରି ବସେ
ତୁ କ'ଣ ନିୟତି ?
ତୁ କ'ଣ ଭାଗ୍ୟ ବିଧାତ୍ରୀ ?
କଲିଜାରୁ ଖଣ୍ଡେ ହଜେଇଦେଇ ଖୋଜୁଚୁ
ଅଥଚ, ଜର୍ଜର ହୃଦୟକୁ ନିଜର ଛୁଇଁ ପାରିଚୁ ?

ଶୋକରେ କି ବୋକରେ
ଲୟରେ କି ଭୟରେ
ଦୋହଲୁଥିବା ତୋର ହୃଦୟକୁ ଚିହ୍ନିପାରିଚୁ ?

ଦି' ପହରୁ ବେଳବୁଡ଼ିଲା ଆସି
ଛିଣ୍ଡା କଲିଜାଖଣ୍ଡକୁ
ପାରିଲୁ ନାହିଁ ଆଉଁସି–
ସେ ପଥର ହେଲା । ଧିକ୍ ତତେ !

ମାନିଯା' ଏଥର
ନିଃଶ୍ୱାସଟିକୁ ତୁ ସାଧିଲାଗିଚୁ କେବଳ
ଏଣେ ମହୁରଂଗର ସ୍ୱପ୍ନ
ତୋ ନିଘା ବାହାରେ
ବନମାଟି ଲିପା ଚକ୍ରବାଳରେ ଉଡ଼ିଗଲାଣି,

କୋଉଦିଗରୁ କେଜାଣି
ଘୋଷି ଲାଗିଚି ଜଣେ-
"ଯିଏ ଯୋଉଠି ଅଛି, ଚୁପ୍‌ରହ ତ-
ମାଡ଼ି ଚାଲିଚି ସମୟର ଦର୍ପ
ତା' ସାମ୍ନାରେ ତୁମେ
କିଛି ନୁହଁ, କିଛି ନୁହଁ..
❑

# ପରିତ୍ୟକ୍ତ ଘର

ରାସ୍ତାସାରା ଘଇଳର କଂକାଳ
ମୁଁ ଖୋଜି ଯାଇଥିଲି ଘର ।
ପଦ୍ମଫୁଲ,ଭଅଁର
ଦୋଳି ଓହଳର,
ପେନ୍ଥାପେନ୍ଥା ବଣମଲ୍ଲୀ
ନଡ଼ିଆ ଚଅଁର
ତାଳ ବାହୁଂଗା,ସବୁଜ କଅଁଳ ।

ଆଉ କାହାରି ଭାଗ ନଥିଲା ଏଥିରେ
ବୟସ୍କମାନେ ଅଣହେଳା ଭୋଗି
ବାହୁଡ଼ି ସାରିଥିଲେ ।
ଫ୍ରେମକାଠ ନଥିଲା
ମାଟିକୁଦ ତଳେ ପୋତି ପଡ଼ିଥିଲା
ଫଟୋ,ରୂପସୀ କିଶୋରୀର ।

ଯେଉଁ ପିଣ୍ଡାରେ ଠିଆହୋଇ
ଅନେଇଥିଲି
ଲହଡ଼ା ମାରୁଥିବା କ୍ଷେତକୁ
କାନ୍ଥରେ ଟାଂଗୁଥିଲି ଚିତ୍ର
ନାଚି,ଗାଇ କଂପାଉଥିଲି ଦୁଆର

ବ୍ଲାଉଜରେ ଫୁଟାଉଥିଲି
ନାନାରଂଗ ରେଶମୀଫୁଲ
ଉଦ୍ୟାନ୍ ସକଳ,
ଦିଶୁ ନଥିଲେ କୀଟପତଙ୍ଗ
କଷିଧାନ,
ମୁଁତେବେ ଖୋଜି ଆସିଥିଲି କଅଣ ?
କେବଳ ସଂପାଦି ରଖିଲେ ହୁଏନା
ଛାତିରେ ଭିଡ଼ି ଧରିବାକୁ ହୁଏ,
ସାମ୍ନାକୁ ଉଠାଇ ଆଣି
ଆଉଁସି ଦେବାକୁ ହୁଏ
ପାପୁଲିରେ,ଋହାଣୀରେ, ସ୍ୱରରେ ।
ମୁଁ ବୁଝି ନଥିଲି ।
ସ୍ତ୍ରୀଲୋକଟେ ପାଇଁ ବୋଧେ
କଣ୍ଟାରେ କଣ୍ଟା ଖଂଜି
ଘେରାଇଦିଏ ତାରବାଡ଼ଟେ
ତା'ନିଜ ସମୟ,
ନବଯୌବନ କାଳ,
ବାଡ଼ଡ଼େଇଁ ଆସିଲାବେଳକୁ
ଦିହସାରା ରକ୍ତ ଧାର ଧାର ।

ହେଲେ,
ନଥିଲି ମୁଁ କାହାର ।
ଢ଼େଣାହଲେ ଲଗାଇବା ଚେଷ୍ଟାରେ
କୁତୁକୁତୁ ହସୁଥିବା ବୁଦାମୂଳେ
ମାଗିଥିଲି ଚଢ଼େଇଙ୍କି
ପ୍ଲିଜ୍ ଧାରଦିଅ ମତେ
ଡେଣା ହଳକ,
ଫେରାଇଦେବି ନିଶ୍ଚେ,

ଅନ୍ତତଃ କବଳରେ ରହିବିନାହିଁ ଏଣିକି
କାହାର ବୋଲି କାହାର ।

ଚଢ଼େଇଙ୍କ ଫାର୍ଶାକୋଳିପରି ଆଖିରେ
ବିହ୍ୱଳ ପତିଆରା,
ଦୁଇବାହୁରେ ମୋର
ଖଂଜିଦେଲେ ଡେଣା
ନୀଳ ହଳଦିର ।

କେତେଦୂର ଉଡ଼ିଆସିଥିଲି ମୁଁ !
ଛାତିରେ ଧରିବି ବୋଲି ତାତିକୁ
ସ୍ମୃତିସବୁକୁ,
ଅଥଚ, ଥଣ୍ଡାପବନର ଧକ୍କା,
ମହାର୍ଘ ସେ ମୁହୂର୍ତ୍ତ ପଥର ପାଲଟି
କିଛି ନ ଥିଲା ଆଉ,
ମୋ ଭିତରେ ବର୍ଷା ବର୍ଷା ଖାଲି
ଫେରିଲାବେଳକୁ ।

❑

# ହାତ ନ ଧରିଲେ

ହାତ ନ ଧରିଲେ ନ ଚଳେ ?
ମୁଁ ଧରିଚି ପବନ-ଗଢ଼ା ହାତ
ତ ବେଳେବେଳେ ତୁଳା-ଗଢା ହାତ
କ୍ଷଣକ୍ଷଣ ଅସ୍ଥିର ଚଂଚଳ
ଏମିତି କି ଥକ୍କାମାରିବ ଘଡ଼ିଏ
ନଥିବ ପାହାଡ଼ ଖୋଳି କି' ଗଛଡ଼ାଳ-

ନାଲିଚିଆ ବଉଦ ଫଟାଇ ଦେଖିଲି ଗୋଟେ ମୁହଁ
ବଣ ଭିତରେ ସତେ ବା ଗାରେ ଖରା
କର୍ଣ୍ଣ କୁଣ୍ଡଳ, ଗାଲର ତିଳ
ଗୋଛେ ଝିଲିପି ବାଳ ହସ ଯେମିତି ମହୁ
ଇସାରା, କୋଳିପରି ରସଭର ।

ପ୍ରସ୍ତପ୍ରସ୍ତ ନୀଳରଶିରେ ବନ୍ଧା ମୁଁ
ସବୁ ପ୍ରସ୍ତଙ୍କ ନାଆଁ କିନ୍ତୁ ଭିନ୍ନ ଭିନ୍ନ
ଶରୀର ବି କ'ଣ ନୁହେଁ ଗୋଟେ ବନ୍ଧନ ?
ସେ ଦିନ ସବୁଜ ଧାନଗଛଟେ ପରି ସେ ଝିଅ
ଭରା କେନାଲରେ
ଭସାଇ ଦେଇଥିଲା ତା' ସ୍ୱପ୍ନକୁ
କ୍ଷୀର ଗିଲାସ, ଗୋଲାପବାସ
ପଶ୍ଚିମାଶାରେ ବୋଳା ଲିପ୍‌ଷ୍ଟିକ୍ ପୂର୍ବଦିଗ ଅନ୍ଧାର,
ଲକ୍ଷ୍ୟ ନଥିଲା ତାର
ସାମ୍ନାରେ କୋଉଠି ତେଜି ରହିଥିଲା
ପରିହାସ, ଆଗତକାଳର ।

ଅବଶ୍ୟ ସ୍ୱପ୍ନଙ୍କୁ ଅନୁସରଣ କରିବା
ମୁଁ ଶିଖେଇ ନ ଥିଲି ସେ ଝିଅକୁ,
ବାରଣ କରି ନଥିଲି
ଡ଼େଣା ନ ଥିବା ସ୍ୱପ୍ନଙ୍କୁ
ଆକାଶ ଆଡ଼େ  ଛାଟି ଦବାକୁ
ସ୍ୱପ୍ନ ପଳାଶବଣ, ତାରା ଲକ୍ଷେ ଯୋଜନ
ଗଭୀର ପ୍ରାଣାବେଗର କଂପନ
କହି ନଥିଲି ତାକୁ ଏ ସବୁ ।

ସ୍ୱପ୍ନ ଫଳିଲେ ହିଁ ସରିଯାଏ
ସ୍ୱପ୍ନ ଥାଉ,
ଅଠା ପରି ଯୋଡ଼ିରହୁ
କହିଲେ ବି ଶୁଣନ୍ତି ନାହିଁ କେହି କେବେ ।
ମୁଁ ନିଜେ ବି ତ ବିଦାରି ପକାଇଚି
ସ୍ୱପ୍ନଙ୍କୁ, ଫାଳଫାଳ କରିଚି
ଝିଂକି ଆଣିଚି ତାର ନାଭିନାଡ଼
ଚୀରି ଯାଇଚି କାର୍ବନରଂଗର ଅନ୍ଧାର ।

ସ୍ୱପ୍ନର ଅଂଗାର ଉପରେ ଆଜି
ବୋହିଯାଉଚି ଧାରେକ୍ଷୀର ଉଜାଗର ପାହାନ୍ତାରେ
ଛୁଇଁଯାଉଚି ତୁଳା-ଗଢ଼ା, ପବନ-ଗଢ଼ା ହାତ
ଘୋର ଦୁର୍ଦ୍ଦିନ ଭିତରେ ଆଶ୍ରୟ
ନିଃଶ୍ୱାସ ତାଙ୍କର ।

❑

## ଠିକଣା ନାହିଁ

ଚିଠି କାହିଁ, କାହିଁ ସ୍ୱର, ନାହିଁ ଅକ୍ଷର,
ଠାବ କରିବାର ଉପାୟ ନାହିଁ ତୁମର
କତା ଦଉଡି ଲମ୍ବିଯାଇଚି
ଯୋଡରାସ୍ତା, ମଝିରେ ଦୁଇକେନା
କେନାଏଁ ପଥୁରିଆ ମାଟି
ଛଣରଂଗର
କଡ଼ରେ କଂଚାଆମ୍ବ ରଂଗର ଘାସ
ତା'ପରେ କେତେ ବୁଲାଣି
ଉଠାଣି, ପଡ଼ାଣି,
ଜାଗାଟେ ଯେ, ସଠିକ୍ କିଛି
ନାହିଁ ତାର ।
ସେଲ୍‌ଫୋନ୍, ଇମେଲ୍ କିଛିବି ନାହିଁ
ନାହିଁ ତାର ନାମ ଫଳକ ।

ନହେଲେ
ତୁମ ପାଖରୁ ଛୁଟି ଆସନ୍ତା
ଭଲ ପାଇବା, ଗାର ଗାର,
ଆବେଗ ଭିଜା ସ୍ୱର
ସେ ହାତମୁଠାରେ ଧରି ନିଅନ୍ତା,
ଅଥଚ, ଏଠି ସବୁକିଛି ନିଥର ।

ଦିନସରିଲେ
ବାଲି ମୁଠାକ ପରି
ଉଡ଼ି ପଳାଇ ଯାଉଚି ଛାଇ
ହୁଂକାରେ ସାପ,
ଅନାବନା ବଣରେ ନେଉଳ
ପାଖୁଡ଼ା ପାଖୁଡ଼ା
ଝଡ଼ି ପଡୁଚି ଶୀତଋତୁ ।

ଆଦିଗନ୍ତ ବିସ୍ତାରି
ବିପୁଳ ଲୁହ ଆଡ଼କୁ
ଧାଇଁଯାଉଚି ଝର
ଏଣେ ତଣ୍ଟି ଶୁଖି ଆସୁଚି ତା'ର ।

ଝଡ଼ାପତ୍ର ପରି ମୋଡ଼ିମୋଡ଼ି ହେଉଥିବା
ତା' ଆଖିରେ
ଶବ୍ଦକୁ ଭୁଲି ଆସୁଥିବା ତା' କାନରେ
ହୁଏତ ଶୁଭିଯିବ, ଦିଶିଯିବ ଦିନେ
ତୁମ ଭଲପାଇବା, ତୁମ ଚେହେରା
ଦୁଃଖକୁ ସେ ଚିହ୍ନିପାରେନା ବୋଲି
ଭାବେ,
ସାମ୍ନାରୁ ଉଇଁ ଆସୁଚି ଆଲୁଅ,
ନିଖୋଜ ଚଢ଼େଇର ସ୍ୱର
ଲାଗେ, ସେ ହଜିଯିବନି ଏଣିକି
କେହି ନା କେହି
ଖୋଜିବସିଲେ,
ପାଇଯିବ ତା' ଘର ।



# ସ୍ମୃତିମାଗେ

ମହାଶୂନ୍ୟରୁ ବୁନ୍ଦାଏ ଓହ୍ଲେଇ ଆସି ମାଗୁଚି
କୋଉଠି ସେ ବସିଯିବ–
ଚାରିଆଡ଼େ ପାହାଡ଼ ପଥର ମରୁଭୂମି, ମଲାଡ଼ାଳ
କୋଉଠି ବସିପଡ଼ନ୍ତା
ତା' ପାଇଁ ଜାଗା ଦିଅ– ସେ ଖୋଜୁଚି ।

ପବନର ଚଟାଣ
ଘରଚଟିଆ ଡ଼େଣାର ଚିହ୍ନ
ସଜଦୂବର ଛନଛନ ନହେଲେ ବା
କବିର ବିନିଦ୍ର ଆଖିପତା,
କି ଧାନବିଲର ଗାରେ ହସ
କି ଭଲ ପାଇବାର ସାହସ କୋଇଲିର କୁହୁ
କି ଜହ୍ନ ଆଲୁଅର ପିଠି ସେ ବସିବ ତ କୋଉଠି !
କଷିପତ୍ର ରଂଗର ସୂର୍ଯ୍ୟ
ନିଆଁ ବର୍ଷିଲାଣି ଉପରୁ ଖିଏ ନଇପାଣିରେ
ବୁଡ଼ି ମରୁଛନ୍ତି ଗୋଟାକୁ ଗୋଟା ତାରା
ଜାଗା କାହିଁ, ତା' ପାଇଁ ?
ଅପ୍ରସ୍ତୁତ ସମୟ, ଅନାଦି
ସେ ଜାଣେ
କଇଁଛ ପରି ବେକ ଲମ୍ୱାଇ

ଛକି ରହିଥିବା ମରଣ
କେବେ ବି ଆସିବ ନାହିଁ ତା' ପାଖୁ ।
ମୃତ୍ୟୁ ନ ଥିବାର ଅଭିଶାପକୁ
ବିଚ଼ରା ଭୋଗି ଚାଲିଥିବ ନିରନ୍ତର ।

ଜନ୍ମ ନେଇଚ଼ି ସେ ଅଂଗାରରୁ, ହୀରାରୁ
ନିଆଁରୁ, ଅନ୍ଧାରରୁ
ତଥାପି ସେ ସ୍ଥିତି ଲୋଡୁଛି
ଶ୍ୱାସ ଲୋଡୁଛି, ସ୍ପର୍ଶ ଲୋଡୁଛି, ମାଟିରୁ-
ଅକଳ୍ପନୀୟ ଦୂରତାରେ
ଘୂରି ଲାଗିବା, କେବେ ବି ନ ମରିବା
ବସିଯିବା ପାଇଁ
ଜାଗାଟିକେ ନ ପାଇବା, ସୁହାଉ ନାହିଁ ଆଉ ।

ଲୋଭ ଲାଳସାରେ ଆକଣ୍ଠ ବୁଡ଼ିଥିବା ମଣିଷ
ପଡ଼ି ରହିଛି ଶ୍ୱାସହୀନ, ଶୁଷ୍କ
ଅଣ୍ଡାଳୁଛି ତା'ର ନିରୁପାୟ ନିୟତିକୁ ।
କେହି ନ ଦବ ଯଦି
ଟିକେ ଆକାରର ଜାଗା
ତେବେ ତାର ଉଜ୍ଜ୍ୱଳ ପାଗଳାମି ଉପରେ
ଘୋଡ଼ାଇ ଦିଅ ଋମୁଚେ ମାଟି ।

❑

# ସମୁଦ୍ର ଉପରର କୁହୁଡ଼ି

ଅସଲରେ, ମୁଁ ଚିଠିଟା ପୋଷ୍ଟ କରିନି ।
ଭଲ ପାଇବାକୁ ଯେତେ ତାସ୍ଥଲ୍ୟ କଲେ ବି
ମୁଁ ଜାଣେ
ତା ମିଠାଖଟା ସୁଆଦ, ମତେ ସୁହାଏ
ହତାଶ କରେ ତା'ର ସ୍ମୃତି ।

ଚମ ଉପରେ ସୂର୍ଯ୍ୟାଲୋକର ଉଷ୍ମତା ପରି
ଝର୍କାଦେଇ ପହଁରି ଆସୁଥିବା
ଗୀତର ସୁର ଭଳି
ତା' ମତେ ଉସ୍‌କାଏ ଯେତିକି
ବିଷଣ୍ଣ କରେ ସେତିକି ।

ତେବେ ବି
ଅସଂପୃକ୍ତ ରହିବାକୁ ମୁଁ ଚାହେଁନା
କିନ୍ତୁ ଚିଠି,
ଆବେଗ ଆଉ ଛଦ୍ମମରେ ଖୁନ୍ଦାଖୁନ୍ଦି
ମୁଁ ଜାଣେ,
ସେଥିରେ ରକ୍ତ ଥାଏ ନଥାଏ
ଜୀବନ ଥାଏ ନଥାଏ
ତା'ର କିଛି ନିର୍ଦ୍ଦିଷ୍ଟତା ନାହିଁ ।

ଯେମିତି ସମୁଦ୍ର ଉପରର କୁହୁଡ଼ି
ଉଜ୍ଜ୍ୱଳ ଅଥଚ ଅନିଶ୍ଚିତ ଗୁଣ ତାର
ଟିକକେ ଏଇଠି, ଟିକକେ ନାହିଁ ।

ସତ ଭଲ ପାଇବାରେ ଆଂକୁଡ଼ି ଧରିବା ନଥାଏ ।
ଉତ୍ସର୍ଗପଣ, କେବେ ଦେଖେଇ ହୁଏ !

ଅକୁହାକଥାରେ
ଥାଏ ଅସରନ୍ତି ମନ ଅଦିନିଆର କବିତା ।

ରାତି ଅଧରେ ରୀତିମତ ଫୋନ୍ ଲଗାଏ ଯିଏ-
ଜାଣେନା ସେ ଯେ କଥା ?
ଏତେ ବା ବଡ଼ ଘଟଣା କ'ଣ
ସେ ପାଇଲେ ନ ପାଇଲେ ଚିଠିଟା ?

❑

# ପ୍ରତୀକ୍ଷାରେ ତୋର *

ପ୍ରାତଃ ଆକାଶପରି ପାଟଳ
ଛେନାଫୁଲ ଭର୍ତ୍ତି * ଆର୍ଲିଂଟନ ସହର,
ଡ଼େଣାରୁ ତୋର ଖସିପଡ଼େ ଅବିର ।
ଚମକି ପଡ଼େ ମୋର ପ୍ରତୀକ୍ଷା
ବହୁଦିନୁଁ ମୋ ଭିତରେ ମୋଡ଼ିମୋଡ଼ି ରହି
ନିଜ ପରରେ ଥଣ୍ଟ ଘଷୁଥିବା
ସେଇ ପ୍ରତୀକ୍ଷା-

ପାନପତ୍ରିଆ ଦର୍ପଣ ପରି ମୁହଁ
ନାଁ ମୁହଁଟି ପରି ଦର୍ପଣ ?
ଜଂଗଲ ମଝି ଝରଣାପରି ତାର ବାଳ
ମନେ ଅଛି ତୋ'ର ?
ସେଇ କିଶୋରୀ,
ଛପି ଛପି ଆସିଲେ ପାଖକୁ
ଉଡ଼ି ପଳାଉ ତୁ,
ପୁଣି ପ୍ରତିଦ୍ୱନ୍ଦ୍ୱୀ ସାଜୁ

ଆଢୁଆଳେ ଥିଲେ ସେ
ପାନପତ୍ରିଆ ଦର୍ପଣରେ ଚଂଚୂଘଷ୍ଣୁ, ଭଂଗୀକରୁ ।

ପରଖୁ ବୋଧେ ତୁ 'ନାଁ ସେ'
କିଏ ବେଶି ମିଠା ଲାଗୁଚି, କିଏ ?
କେବେ ଚାଟୁକାରର ନିଃଶ୍ୱାସ
କେହି ଫେରିବାଲାର ଚତୁର ସାଜ
କେହି ମିଛ-ସଜନୀର ହସ
ଉତ୍ୟକ୍ତ ମହୁ ଫେଣାରେ ବଜବଜ
ଏତେ ସବୁକୁ ଟପି ଆସିଲାବେଳକୁ
ଆଖି ବୁଜି ଆଣୁଚି ସକାଳ
ଏଇଲେ ସଂଜ ।
ପୁଣିଥରେ ଚମକି ଉଠେ ମୁଁ
ପାନପତ୍ରିଆ ଦର୍ପଣରେ କେତେ କେଜାଣି ଦାଗ
ତଥାପି, ଝର୍କା ସେପଟେ ଥାପିଦିଏ ଦର୍ପଣ—
ଆସନ୍ତୁ, ଥଣ୍ଟ ମାରନ୍ତୁ
ନାଚି ନାଚି ମୁହଁ ଦେଖନ୍ତୁ ଦର୍ପଣରେ, ନବଜ କରନ୍ତୁ ।

କେତେ ବଉଦ, ସବୁଜ ସଘନ
କେତେ ଛାଇ କେତେ ଘାସ
କେତେ ବାସ୍ନା, କେତେ ନିର୍ଜନ
ଖେଳୁଥାନ୍ତା ଟୁକୁରାଏ ସ୍ୱଚ୍ଛ ପବନ ।

ଯେ କଂକ୍ରିଟ୍ ଖୋପଗୁଡ଼ାକ ଭିତରେ
ଛନ୍ଦାଛନ୍ଦି ବୁଢ଼ିଆଣୀ ଜାଲ
ପୋଡ଼ିଯାଉଚି ଗଛ କୋରଡ଼, ପତ୍ରଫୁଲ
ବିଷଜର୍ଜର ବିଲ ଝିଲ
ଉଦାସ ଦି'ପହର-ପଶିଆସୁ

ଅତର୍କିତ, ତୁ ତ ନୋହୁ,
ଚିତ୍ର ତୋର ମିନିଟ୍‌କର ।
ଚହଲିଗଲାବେଳେ ଭରାମାଠିଆ
ଛୁଟି ଆସିଲା ବେଳେ
ପାହାନ୍ତି ତାରାରୁ ଚୁମକ
ତୋ ଡ଼େଣାର କଳାଧଳା ଝାଲର

ଉଡ଼େଇ ଆଣୁଥାନ୍ତା ସ୍ୱପ୍ନ
ପୃଥ୍ୱୀର, ଅନ୍ତରୀକ୍ଷର ସ୍ୱପ୍ନ, ସୃଜନ, ନୂଆଦିନ
କେତେ କେଜାଣି, କେତେ...



* ଆମେରିକାର ଏକ ସହର

## ଝିଅଟିର ଦିନରାତି

ପାଠପଢ଼ା ଉଜେଇଁ ଦେଇ
କଲେଜ ହଷ୍ଟେଲରୁ ଗଲା ହାଣ୍ଡି ଧୋଇଲା
ଘରର ଦୁଆର, ନଳାମୁହଁ ଲିପିଲା,
ଗୋବର ପାଣି ହାଣ୍ଡିରେ
ହାତ କୁଣ୍ଢେଇ ହେଲା ତା'ର,
ସୁନାବଳା, ଶଂଖା ପିନ୍ଧା ସୁକୁମାର ହାତ,
କଳା ପଡ଼ିଗଲା ନଖ,
ଗୋଡ଼ ଘଷିଲା କେତେ କେଜାଣି ମାଇପିଙ୍କ ।

ସେଇଠୁ ସହର ଆସିଲା ଯେ
ଦି' ବଖରା ଘର, ବାସନମଜା
କରତଗୁଣ୍ଡ ଚୁଲୀ
ପାଠକୁ ମୁହାଁଇଦେଲା ଚୁଲିରେ
ଶାଠ ବୋଲି କିଛି ନଥିଲା ତା'ର ।
ମୂର୍ଖ ଝିଅଟା, ବୁଝିଲା ନାହିଁ
କ'ଣ ତାର ଜରୁରୀ ଦର୍କାର !

ଚମକୁଥିଲା ବି ଚେ଼ହେରା ତାର
ଶସ୍ତା ଲୁଗାରେ,

ଅତିବେଶୀ ଖୁସି କରିବ ବୋଲି
ଜ୍ଞାତି ପରିଜନଙ୍କୁ
ନିଜକୁ ଘୋଷାରୁଥିଲା
ଉପାସ ବି ରହୁଥିଲା ଥରେ ଥରେ ।
ଏଣେ, ଘରିପାଖେ ଧନର ବିପଣୀ
ତା'ର ଧନ ନ ଥିଲା
ମନମରା ହେଇ ନଥିଲା କେବେବି ।

ପାଖପୋଖରୀ ସାରା
ପାଣି ଶିଉଳିର ହସ,
ଝର୍କା ସେପଟୁ ଖରା ଚେନାଏ
ଟେକି ଉଠୁଥିଲା ସେ ।

ଓଦା ଶେଯ, ଛୋଟ ଛୁଆର ଅଝଟ
ରାତିସାରା କ୍ଳାନ୍ତ ଶରୀର ଉପରେ
ସ୍ୱାମୀର ଜୁଲମ୍, କ୍ରୋଧ
ପା' ପୋଛ ପରି ବ୍ୟବହୃତ ହେଉଥିବା
ତା'ର ଅସ୍ତିତ୍ୱ ।

ଲୁଗା ଗୁଡ଼େଇ ହେଇ ସେ
ଧୀରେ ଧୀରେ ଚାଲୁଥିଲା ବାଟ
ମାଆ ଭାଇ ରୁନ୍ଧି ହଉଥିଲେ
ଘାରି ହେଇଗଲା ଆମ ଝିଅଟା ତ !

ଘରଟା ଯାକର ଆଉ କେହି ଭାବୁ ନଥିଲେ
ଝିଅଟିର ଛାତି ତଳେ ସୁଖ
ନାଁ ଦୁଃଖ କଷ୍ଟ !
❑

# ବାସ୍ନା

ତା' ବାସ୍ନା
ସବୁ ବାସ୍ନାଠୁଁ ଅଲଗା
ସବୁଠୁଁ ବେଶି ଦଗାଦିଆ ।

ଖରା ଛୁଉଁ ନ ଛୁଉଁ ଅଗଣା
ଦଳ ପୋଖରୀ, ହିଡ଼ଘାସ ପରି ତାର ବାସ୍ନା
ବେଳ ବଢ଼ିଲେ
କଲେଜ ଲନ୍‌ର ବାସ୍ନା ଉବୁକେ
ଋତୁଙ୍କ ଡ଼ାକରାରେ
ଗଛଲଟାଙ୍କ ମୁର୍କିହସ ପରି
ସେ ବାସ୍ନା ଛାଆଁକୁ ଫିଟେ
ଆବିଷ୍ଟ କବି ନିଦ ହଜାଏ
କେବେ ଗଂଭୀରୀ ଘରେ
ମୁହଁମାଡ଼ି ବସେ ତ
କେବେ ଘୋ'ଘୋ' ବଜାରରେ
କ'ଣ ହଜେଇ ଖୋଜୁଥାଏ ।

ଖାଁ ଖାଁ ଖରାରେ
ଚ଼କୋର ଡ଼ାକେ
କବିଟିଏ ଯେବେ ଘର ଛାଡ଼େ

ନୂଆ ଚିହ୍ନା ରାଜପଥରେ କେହି ନଥାଏ ।
ଅଚିହ୍ନା ଅତରର ଉଦ୍ଘାଟନ
ମନମନନ ଶିରା ସ୍ନାୟୁ
ଝଙ୍କୁଥାଏ ଠୋପା ଠୋପା ପରମାୟୁ
ବିଭୋର କବି ମୂକ ହୁଏ ବାଉଳ ହୁଏ
ନିଆଁ ହୁଏ ଚନ୍ଦନ ହୁଏ ।

କଳିଜା ଭିତର ଘାଆକୁ ଆଉଁସେ ତ
ବ୍ରହ୍ମ ରାକ୍ଷସର ଅଟ୍ଟହାସକୁ ଟାଳିଯାଏ
ଅଗ୍ନିବାଣକୁ ଫସ୍‌କେଇ ଦିଏ ।

ଖରା ନଇଁଗଲେ ବି କମେନା
କି ବଢ଼େନା ଅଉନକ ସେ ବାସ୍ନା,
ଦେଖାକୁ ଧରେ ଅଦେଖାକୁ ଧରେ
ସୀମାରେଖା ଲିଭାଏ
ହସକୁ ଲୁହରେ, ଲୁହକୁ ହସରେ ପାଣି ଫଟାଏ,

ସେଇ ବାସ୍ନାରେ ଗାଧୋଇବା ସଧରଖି
ଉଭା ନଂଗଳା ତାରା ବି
ଡ଼େଇଁପଡ଼େ ଦାଣ୍ଡ ଧୂଳିକି
ବିଚ୍ଚରା କବି
ଜାଣିଥାଏ ଯେ
ବାସ୍ନା କାହାର ନୁହେଁ
ଏଇଲେ ଏଇଠିତ
ଏଇଲେ ବ୍ରହ୍ମାଣ୍ଡ ଡ଼ିଏଁ ।

❑

## ବଣଦେବତୀ

ଶରୀରିଣୀ ମୁଁ ଉଲ୍ଲଂଗ
ଅଥଚ ଗୂଢ଼ରୂପ ।
ପାହାଡ଼ ଶିଖ ସ୍ତନାଗ୍ର ମୋର
କେଶରାଶି ମେଘ
ହାତ ଦୁଇଟି ଜଳଧାର
ପୃଥ୍ୱୀର କେନ୍ଦ୍ର ଛୁଇଁଚି ମୋର ଗୋଡ଼
ଆଉ ମୁଁ
କେବେ ନୀଳ ତ କେବେ ଶୁଭ୍ର
କେବେ କୋମଳ କେବେ କରାଳ
'ଦୁଧ ସାଗର' ବା ନିଆଗରା
ବରେଇ ପାଣି ବା ଘାଗରା
ଲମ୍ଭି ଯାଇଚି ମୁଁ ସସାଗରା
ଚିହ୍ନାଇବି କେମିତି
କେଡ଼େ ସବୁଜ,
କେତେ ଉଚ୍ଛଳ
ମୋର ରକ୍ତି ଫୁଆରା !
ପ୍ରତିକ୍ଷଣ ପ୍ରତିଲୟରେ ମୁଁ
ଛାଟିଦିଏ ସୁବାସ
ପାହାନ୍ତାରେ
ସବାଆଗ ନିଦରୁ ଉଠେଇଦିଏ ଚଢ଼େଇଙ୍କୁ
ପଠାଇଦିଏ ମାପିବେ ବୋଲି ଆକାଶ

ଦିନଶେଷର
ପାଲଟେ ମୁଁ ଜୀବନ୍ତ ଏକ ରହସ୍ୟ,
ମଣିଷ, ତୁ ବୁଝୁ କି ନା କେଜାଣି
କେତେ ବିପୁଳ ମୁଁ, କେତେ ହ୍ରସ୍ୱ !
ଅଥଚ୍ ପଣ କରିଚ୍ଚି
ତୋତେ ହିଁ ଭଲପାଇ ସାରିଦେବି ମୋର ଆୟୁଷ,
ଜୀବମାତ୍ରେ  ଅନନ୍ୟ
ଅଂକୁଶ ମାତ୍ରେ ଆଭରଣ
ତଥାପି ତୁ ଶୋଷି ନେଲୁ ମୋର ଲାବଣ୍ୟ
ଛିନ୍ନ କଲୁ ଗଛରୁ ପକ୍ଷୀ
ପଶୁଙ୍କ ଠୁଁ ଅରଣ୍ୟ
ସୁବାସିତ ଅଂଗରୁ ମୋର
ଛେଦି ପକାଇଲୁ ହାଡ଼ ମାଂସ ।

ଡିନାମାଇଟ୍‌ରେ ଫଟାଇ ଦେଲୁ ମୋ ବକ୍ଷଦେଶ,
ତୋର ଲୋଳ ଜହ୍ୱର ଲୋଭ
ଚାଟି ଗଲା ଯେ ଚରାଚର
ଏବେ ସନ୍ତାନର ଅବହେଳା
ସ୍ୱେଚ୍ଛଚାର ଦାଢ଼ରେ
ମୁଁ ଘାତ ଜର୍ଜର-

ଧ୍ୱସଂର ଫୁ ଫୁ କାର, ନିଃଶ୍ୱାସ
ଜାଳି ଦଉଚି କୁନି ଛୁଆଙ୍କ ଭବିଷ୍ୟ
ଅମ୍ଳଜାନ ହୀନ
ଅସୁସ୍ଥ ରୁଗ୍‌ଣ
ସରି ଆସୁଚି ତାଙ୍କ ପ୍ରାଣ ପବନ ।
ଅରଣ୍ୟ ମାତ୍ରେ ଜୀବନ
ଦେଖ୍ ମଣିଷ ଲକ୍ଷ ଲକ୍ଷ ବର୍ଷର

ଚିର ଶ୍ୟାମଳ ମୁଁ ତ, ହେଲେ ଅମରୀ ନୁହଁ ।
ମୋ ଭିତରେ ଛଟପଟ ଜୀବନ
ମୋର କସ୍ତୁରୀ
ମୋର ଗଜମୋତି
ଔଷଧି
ମୋର ସକଳ ସଂପତ୍ତି
ବଂଚି ନରହିବ ଯଦି
ଦାରୁଣ ତୋର ଉତ୍ପାତରେ
ଉଭାନ ହୋଇଯିବ ଯଦି !



# ରାସ୍ତା ମଝିର କଥା

ସର୍ତ୍ତ ରଖିବି ନାହିଁ, ଏଣିକି
ବାଟ ସରିଥିବା ଗହୀର ବିଲର ଶୂନ୍ୟତା
ଲମ୍ବି ଆସିଲା, ଚରି ଗଲା
ମୋର ଚାଖଣ୍ଡେ ଛାତି
ଅନ୍ଧ ବିଧାତା
ଦେଖି ପାରିଲା ନାହିଁ କେମିତି !

ଖୋଲା ପୃଷ୍ଠା ପରି
ଫିଙ୍ଗି ଦେଲି ନିଜକୁ ମୁଁ
ରାସ୍ତା ମଝିକୁ
ଫିଟେଇ ଦେଇଥିଲି ଜୀବନକୁ
ପୃଷ୍ଠାଟେ ପରି
କଥାର କଟୁରି
ଲାଭକ୍ଷତିର ବେପାରି
ମୂଢ଼ର ଅହଂକାର
ମାର୍ଜାରର ଲୋଭ
ସକଳେ ଘୁଷୁରି ଘୁଷୁରି
ରାସ୍ତା ଟପିଲେ
ଗରଜ ନଥିଲା ପଢ଼ିବେ
କ'ଣ ଲେଖା ହେଇଥିଲା ସେଠି ଧାଡ଼ି ଧାଡ଼ି ।

କେତେ ଆବେଶ
ଲୁହ ନିଃଶ୍ୱାସ
ଭଲପାଇବାର ଶୁଦ୍ଧ ଅକ୍ଷର,
ଇସ୍ତାଡି ପଣ ପ୍ରାଣ ହାରିଦେବାର ।
ପାଖୁଡ଼ା ଉପର କାକର
ଚଢ଼େଇର ଚୋରା ଗହାଣୀ
ସ୍ୱପ୍ନର ଶୀକ୍ରାର
ନୀରବ ମୁଖର କବିତା,
ପାହାନ୍ତି ତାରାର ଜ୍ୱଳ ଜ୍ୱଳ ଗଜମୁକ୍ତା
କେତେ ଦୂରର
ଶାଣିତ ଆକର୍ଷଣ
ରାସ୍ତା ମଝିରେ ଏଣେ ମୁଁ
ମୋର ନଥିଲା କିଛି ଗୋପନ ।

ଅନ୍ତର୍ଲୀନ ବ୍ୟଗ୍ର
ପୀଡ଼ାର ସ୍ୱର
ଆଖିରେ ଫୁଟି ପଡୁଥିବା କଥା
ଯାକୁ ଲୁଚାଇପାରେ କିଏ ?
ଛଟପଟର କାୟାହୀନତା ଉପରେ
ଛଳ ଛଦ୍ମର ପରିଭାଷା ?
କିଏ ଲେଖି ପାରେ ?
ଧୂଳିରେ ଗଡ଼ିଲି ତେଣୁ ସଂଜ ଯାଏଁ
ବୁଡ଼ିଲି ଧୂଳିର ସୁଗନ୍ଧରେ
ଉଡ଼ିଲି ବି ଧୂଳି ସାଂଗେ ଧୂଳି ହେଇ
ଆଡ଼େଇ ଗଲି ଲାଖି ରହିଲି ଉହାଡ଼ରେ ।
ମିଛ ସତ କିଛି ନୁହଁ-
ବଂଚିବ ଯଦି ସତର୍କ ହୁଏ, ହୁଅ ଚତୁର
ସଜାଇ ରଖ ନିଜକୁ,

ନହେଲେ ରାସ୍ତାରେ ଗଡ଼ - ।
ସ୍ନେହକୁ ସଂଭାବନାକୁ ମୋର
ସ୍ୱପ୍ନକୁ ଆଶାକୁ
ପୀଡ଼ାକୁ ପୁଲକକୁ
ରଂଗ ବୋଳି ଢାଙ୍କି ଦବାକୁ
ଦୁଇ ପାପୁଲି ଯଥେଷ୍ଟ ହେଲାନି ଯଦି
ସତ୍ୟର ଝୀନ ଓଢଣୀ
ଯଥେଷ୍ଟ ହେଲା ନାହିଁ ବାରହାତି ଶାଢ଼ୀ, ବି ମୋର
ପୃଥିବୀ ପରି ଲମ୍ୱା ଚୌଡ଼ା ଚଦର,
ଆଉ କ'ଣ କରନ୍ତି ଯେ ମୁଁ
ଖୋଲା ମେଲାରେ, ରାସ୍ତା ମଝିରେ
ଫିଙ୍ଗି ନ ଦେଇ ନିଜକୁ !



## କି ଟାଣପଣ ଛିଃ–

ଛିଃ, ଏଇ ଶକ୍ତିହୀନ ଦୁର୍ବଳ ସ୍ନେହ
ମନ୍ଦମତି ଆଖିଫୁଟା ମୋହ
ଯାହା ବୁଝିପାରିଲା ନାହିଁ ଯଥାର୍ଥ
ଗଳ ଗଳ ଲୁହର, ଛିଃ ଯେ ସବାଖାଇ ଲୋଭ
ଯାହା ତଣ୍ଟି ଚିପିଦେଲା ବିବେକର ।

ଏ ସ୍ୱର, ଯାହାର ଅହଂକାରରେ
ପ୍ରତ୍ୟାଖ୍ୟାତ ଯେତେ ଅନୁନୟ ଆବେଗର,
ଛିଃ ଏଇ ଖୁଚୁରା ପଇସାପରି
ହିସାବ ଯେତକ ଆତ୍ମୀୟତାର
ପାଦତଳେ ଲଟକି ଥିବା ଜୀବନ ପାଇଁ
ହୀନସ୍ତା ଏତେ, ଏତେ ଖେଦ
ସତେକି ନିଜ ଇଚ୍ଛାରେ
ନିର୍ଦ୍ଧାରିତ କରିହେବ ଯିବାବେଳ !
ସତେକି ସବୁତକ ଖରା, ବାସ୍ନା ଫୁଲଫଳ
ସବୁକିଛି ପ୍ରାପ୍ୟ କେବଳ ଜଣକର !

ଯେ ଲୋଭ, ଯେ ଦର୍ପ, ଯେ ଛୋଟପଣ
ଯାହା ଫୁଲିଲା, ଫାଟିଲା, ଶିଖାଇଦେଲା
ମୁଠେଇ ଧରିବାକୁ ପ୍ରାଣ ପବନ
ଘୋଷିବାକୁ ଅଜର ଅମର ମନ୍ତ୍ର ନିର୍ଲ୍ଲଜ ଇହକାଳର
ଛିଃ, ଛି, କି ଗର୍ବ, ଟାଣପଣ ! ❑

# ପାଣିପବନ

ମଝି ରାସ୍ତାରେ ଦିନେ
ଡେ଼ଇଁ ଡେ଼ଇଁ
ଦକ୍ଷିଣା ଖାଉଥିଲା ସେ କିଶୋରୀ
ନରମ ଝଡ଼
ପଛରୁ ଧାଇଁ ଗୋଡ଼ାଇ
ଟପି ଯାଉଥିଲା ତାକୁ
ଗଲାକୁଆଡ଼େ ସେଦିନ ସବୁ —

ଗଡ଼ିଆରେ କୁଦିକୁଦି ଏ କୂଳ ସେ କୂଳ
ହେଲାବେଳେ
ପୁଣି ସୂର୍ଯ୍ୟ ଉଦିଆରେ
ଦେହ ମୁଣ୍ଡରେ
କୂଅ ପାଣି ଅଜାଡ଼ି ସାରି
ସ୍କୁଲ ବାହାରି ଗଲାବେଳେ
ତାକୁ ଭଲ ପାଉଥିଲେ କେତେ
ଯେ ପାଣି ପବନ !

ଏବେ ବି ସେ ଝୁରିହୁଏ ସେମାନଙ୍କୁ
ସେମାନେ ଭୁଲି ଗଲେଣି କିନ୍ତୁ ।
ଅବଶ୍ୟ / କେବେ ବି ବୟସ୍କ

ହୁଅନ୍ତି ନାହିଁ ସେମାନେ
ସେଥିପାଇଁ
ସେମାନଙ୍କ ଅହଂକାର କିଛି କମ୍ ନୁହେଁ ।
ଦିନେ ନିଶ୍ଚେ ସେ ମାନିବ ନାହିଁ କିଛି
ତାଙ୍କର ଯେତେ ଯେତେ ଦାଉ ସାଧିବା,
ଡ଼ରିବ ନାହିଁ ନିଜର ଥର୍ଥର ନାକପୁଡ଼ାକୁ
ଘୋଳାବିନ୍ଧା ହାତଗୋଡ଼କୁ
କୁଦି ପଳାଇବ ଝଡ଼ାପତ୍ରଙ୍କୁ-
ପାଦତଳେ ଭାଙ୍ଗିଦେଇ ଟୁକ୍‌ଟୁକ୍,
ଛାଡ଼ି ଆସିବ ପ୍ରିୟ ପାଣିପବନ
ଆହୁରି କେତେ କଅଣ-କେତେ-କେତେ-
ପହଂଚିଯିବ ନଈକୂଳରେ, ଅବେଳରେ ।

"ଉଦାସ ନାଉରିଆ,
ମୋ ଆଡ଼େ ଅନାଇଁବୁନୁ ତୁ ?
କ'ଣ କ'ଣ ଛାଡ଼ି ଆସିଲି
କିଏ କିଏ ଆଡ଼େଇଗଲେ ମତେ
ସବୁ କହି ପକାନ୍ତି-
ଗୋଟିଏ ଧକ୍‌କାରେ ହିଁ
ଠେଲିହେଇ
କେତେ କ'ଣ ଛାଡ଼ି ଆସିଲି–
ନାଉରିଆ, ତୁ ନବୁନୁ ମତେ ?"

❑

## ଅକାଳ

କଳାହାଣ୍ଡିଆ ହଉକି ପାଉଁଶିଆ ହଉ
କି ହଉ ସଜ ଲହୁଣୀ ରଂଗର
ସବୁ ମେଘ ବର୍ଷେ ନାହିଁ
ଡ଼ାକବଚନକୁ
ମିଛ କରିଦିଏ ପବନର ତୋଡ଼ ।

ପଣସ ପତ୍ର ଉପରେ ଦୀପଜଳନ୍ତା
ସୂର୍ଯ୍ୟ ଜଳାନ୍ତା
ଗତରାତି ଯଦି
ବର୍ଷା ଛେଚ଼ି ଥାଆନ୍ତା-

କୁଟାଖିଅ ରଂଗର ଘାସ
ଲୁଚି ଯାଇଚି ହରିତ୍
ଧାନ ବିଲରୁ ଉଭାନ ବଗପଲ
ଡୋଦୁଅର ଯେ କି' ଅକାଳ !

ଏଇଲେ କହୁ, ଏଇଲେ ଭୁଲିଯାଇ ଆମେ
ଉଦ୍ଦେଶ୍ୟ ଓ ଲକ୍ଷ୍ୟ
ବଦଳାଉ ବାରବାର,
ଅର୍କ୍ଷିତ କୁକୁର ଛୁଆକୁ

ଅଇଁଠା ମୁଠେ
ଅର୍କ୍ଷିତ ମଣିଷ ଛୁଆକୁ
ଭାତ ଗିନେ
ହାତ ଟେକି ଦେଇପାରୁନା ଆମେ
କାହାପାଇଁ ଭାଳି ସନ୍ତୁଳି ହଉନା-
ଭାବାବେଗକୁ ଗଣ୍ଡୁ
ସଜାଡୁ ଥାକ ଥାକ
କୋଉଟା ସୁନାଛତି
କୋଉଟା ଲୁହ ବୁନ୍ଦାର ମୋତି !
କିନ୍ତୁ, କଲୁ ତଉଲୁ
କିଏ ସିଆଣା ସୌଦାଗର ।

କେତେ ଛକାପଂଝା ଆମର
ସ୍ୱାର୍ଥପାଏ ଶରୀର
ଉଲଗ୍ନ ଶରୀର
ନଗ୍ନତା ଘୋଡ଼ାଇବାକୁ
ବୁଦା ଭିତରକୁ ଧାଇଁଗଲେ ବି
ପାଉନା ଗୋଟେ ପତର ।

ବଣସୀମାରେ ବାଘୁଆ ମହୁମାଛିଙ୍କ ଭିଡ଼
ଭିତରେ ଟୁପ୍ ଟାପ୍ ଶାଳଫୁଲ
କୋଉ ରାଜାଙ୍କ ନଅରର
ପାଚେରି ଯେ
କଂକ୍ରିଟ ରଂଗର ?
ମତେ ଲାଗେ
ଏଇଠି ମୋର ଶେଷବେଳ ।



## ଅଗଷ୍ଟ ନଅ'ର ନାୟକ

ସ୍କୁଲ କଲେଜରୁ ବାହାରି ଆସି
ବିଦେଶୀବସ୍ତ୍ର ପୋଡ଼ିଲେ ସେମାନେ
ଜେଲ୍‌ଗଲେ ବିପ୍ଳବୀ ଯେତେ
ମେଡ଼ିକାଲ ସ୍କୁଲ୍ ଛାଡ଼ିଲେ
ମୋ ବାପାଥିଲେ ସେମାନଙ୍କ ଭିତରେ ।
କଟକ ଜେଲ୍‌ରେ ମାସେ
ପାଟ୍‌ନା କ୍ୟାଂପ୍ ଜେଲ୍‌ରେ, ତା' ପରେ ।

ଲାଠି ମାଡ଼ରେ ଫାଟିଲା ପିଠି
ମୁଣ୍ଡ ଫାଟିଲା କାହାର
କାହାକୁ ଫାଶୀ, କାହାକୁ କଳାପାଣି
ଉଜୁଡ଼ିଗଲେ ପିଲାଛୁଆ, ଘରଦ୍ୱାର-
ସ୍ୱରାଜ୍ୟରେ ବାଜି ଆମର
ବଜ୍ର ଶପଥ ଏଇ
ରକ୍ତ ଢାଳିଦେବୁ ଛାତିଉପରେ
ମାତୃଭୂମିର ।

ଏଣେ ଚାରିପଟେ ପୁଲିସ୍ ପହରା
ବିପ୍ଳବୀ ଭିତରଘରେ
ଗ୍ରେପ୍ତାର କରିନେବେ ତାକୁ

କବାଟ ଭାଙ୍ଗି ପଶିଲେ ମୁହଁସଂଜରେ ।
ଠିକ୍ ସେତିକିବେଳେ
ଖୋଲିଲା ବାଡ଼ିପଟର ଦୁଆର
ବାହାରି ଆସିଲେ ଜଣେ
ବାଂଗରା ଲୋକ, ଶ୍ୟାମଳ,
ମଳିଚିଆ ବକଟେ ଗାମୁଛା ତାଙ୍କ ପରିଧାନ
ବାଁ ହାତରେ ପାଣିଢ଼ାଳ, କାନରେ ପଇତା
ପଡ଼ିଆବାଡ଼ିକୁ ଏକ ମୁହାଁ ଧପାଲିଲେ ମାଛି ଅନ୍ଧାର ।
ଠକିଗଲା ପୁଲିସ୍‌ବାଲା
ବିପ୍ଳବୀ ଫେରାର୍ ।

❑
(ଏ ସୁରେନ୍ଦ୍ରନାଥ ଦ୍ୱିବେଦୀ ସେହିବ୍ୟକ୍ତି)

## ଆସିପାରେ

ଏକଦମ୍ ଏକୁଟିଆ ଥିଲାବେଳେ ମୁଁ
ସେ ଆସିବ ବୋଧେ-

ଖୁବ୍ ଅନ୍ଧାର ଭିତରେ
ଲୁଚିଥିବ ଦେହ
କାଳର ସରିଯାଇଥିବ ଆୟୁଷ

ଶବ୍ଦମାନେ
ଭାବମାନେ
ବ୍ୟଗ୍ର ପ୍ରପାତ ପରି ଡ଼େଇଁ ପଡ଼ିବେ—
ଭୁଲିଯିବେ ସବୁ ଅହଂକାର,
ଦାବୀ କରି ବସିବେ ନାହିଁ
ନିଃସର୍ତ୍ତ ଲୋଟିପଡ଼ିବା ମୋର,
ଭିତରେ ବାହାରେ
ଛିଣ୍ଡେଇ ଛିଣ୍ଡେଇ ଖାଇବା ପାଇଁ
ଆଉ କେହି ନ ଥିବେ ଯେ-

ପାହାଡ଼ ପାହାଡ଼ ତାରା
ଆକାଶ ଆକାଶ ବଉଦ
ଅଚିହ୍ନା ଅଜଣା ଦୂରଦେଶ

ଡେଙ୍ଗା ଡେଙ୍ଗା ଗଛ ସେ ପଟେ
ଗୁଂଜି ହେଇଥିବା ଦିଗ୍‌ବଳୟ
ଦିନ ଦିନ ରାତି ରାତି ରହସ୍ୟ
ମୁଁ ଚିହ୍ନେନା ଏ ସବୁକୁ
ସହଜେ
ନିଘଞ୍ଚ ଜଂଗଲ ଭେଦି
ଗାଁରେ ସୂର୍ଯ୍ୟାଲୋକ
ସେ ଭୂଇଁ ଉପରେ ଭାଙ୍ଗି ବିଛାଡ଼ି ପଡ଼େ
ତା'ର ଲକ୍ଷେ ରୂପକୁ
ଧରିରଖି ପାରେନା ମୁଁ ।

ମୁଁ ଯେ କିଶୋରୀକାଳରୁ
ବାଡ଼ଘେରା ଜହ୍ନିଲଟା
କିଏ ମୁହଁ ମାରିଦେବ କାଳେ
ଡରିଯିବି ମରିଯିବି
ସମସ୍ତେ ଜାଗତିଆର ସେଥିକି ।
ସେଇଥି ପାଇଁ ଭାବୁଚି
ସିଏ ବୋଧେ ଆସିବ ଆଜି ।



## ହରିଣାକ୍ଷୀ ଭୂମି

(ପହିଲି ରଜର ଗୀତ)
ଚିରିପକାଅନା ବକ୍ଷୋଜ ତା'ର
ଭରି ଦିଅନା ବାରୁଦ
ଅସ୍ତ୍ରଶସ୍ତ୍ର ବିପଜ୍ଜନକ
ନିକାଳି ଆଣନା ରକ୍ତ
କ୍ଷାନ୍ତ ହୁଅ, ଆଜିକ ।

ହରିଣାକ୍ଷୀ, ହିରଣ୍ୟଗର୍ଭା ଭୂଇଁକୁ
ଗାଧୋଇ ପାଧୋଇ ଦେଇ
ହଳଦି, ଚନ୍ଦନରେ ସଜକର
ଭାରି ପାଦରେ ଚାପି ଦିଅନା
ଛଳଛଳ ଲାବଣ୍ୟ ତା'ର ।

ସାରାବିଶ୍ୱର ଯେତେ ଯେଉଁଠି
ଆତତାୟୀ, ସନ୍ତ୍ରାସବାଦୀ, କାପୁରୁଷ
ସମ୍ଭାଳି ଯାଅ ଆଜିକ
ଆଜି ଯେ ପହିଲି ରଜ ।
ଧରଣୀ, ରୂପସୀ, ରଜୋବତୀ
ଲଳିତ ଲାଜର ଅରୁଣିମାରେ
ବତୁରି ଯାଉଚି ମାଟି

ନୂଆ ନୂଆ ଶପଥର ଅଂକୁର
ଉଦ୍‌ଗ୍ରୀବ ଅପେକ୍ଷାର,
କଠୋର ପାଶବିକତାରେ, ପ୍ଲିଜ୍,
ଚାହଁନାହିଁ ତା' ଆଡ଼େ ।
ଆଃ, ଖୋଳନା, ତାଡ଼ନା ତାକୁ
ଲୁଟି ନିଅନା, ଜୁର କରନା ରତ୍ନଭଣ୍ଡାର
ବନସ୍ପତିକୁ କାଟି ପକାଅନା ଗଡ଼ଗଡ଼
ଜାଳି ଦିଅନା ବଣନିଆଁ
ସମ୍ଭାଳିଯାଅ ଅନ୍ତତଃ ଆଜିକ ।

ମରିହଜି ଗଲେଣି ପିସ୍ତଲ, ବନ୍ଧୁକ, ବୋମା ମୁହଁରେ
କେତେକେଜାଣି ହରିଣାକ୍ଷୀ
ପିଲିସଜ ଗଜଦନ୍ତର, ବରାହ ଅବତାର
ଝଲମଲ୍ ବାଘଛାଲ
କୋଟି କୋଟି ପ୍ରାଣ ନିଃଶେଷ ଅହରହ
ପ୍ଲିଜ୍, ଆଜିକପାଇଁ
ଅଟକି ଯାଅ,
ଥୟ ଧର ।

❑

# କ୍ଷମାକର

ଯେ କବି,
ଯାକୁ, ମୂର୍ଖଟେ ବୋଲି
କହିହବ କି ?

ଭିତରେ ଚରିତ୍ର
ସାମ୍ନାରେ ଚିତ୍ର ସହସ୍ର-
ଅଧିକାଂଶ ନୁହଁ ବର୍ତ୍ତମାନର ।

ଅତୀତରୁ ଉତୁରି ଆସେ ବର୍ତ୍ତମାନ
ଗଛରୁ ଫଳ ଯେପରି
ଫଳରୁ ବୀଜ, ଭବିଷ୍ୟର ରସଝରୀ
ଅଥଚ ହିସାବୀଙ୍କ ବିଘରରେ
ଅତୀତ ଅଦରକାରୀ-

ଜଣେ ବଡ଼ କବି କହିଥିଲେ
ଅତୀତକୁ ଆଂକୁଡ଼ି ଧରନା
ଧରିବା ସମ୍ଭବ ନୁହେଁ
ଆଗୁସାର ହେବାର ଯେ ପଥରେ
ସୂର୍ଯ୍ୟାଲୋକିତ ଗଛମାନଙ୍କ ଭିତରେ
ଗୋଟିଏ ଗଛଛାଇର ଦ୍ୱୀପରୁ

ଆଉ ଗୋଟିଏ ଦ୍ୱୀପ ଟପି
ଚାଲି ଯାଉଥିଲା ବେଳେ-
ଦିଶନ୍ତି ସେମାନେ ତତ୍‌କାଳ ରୂପରେ
ଘଟି ଯାଆନ୍ତି ଆବଶ୍ୟକ ବାସ୍ତବତା ଭିତରେ ।
ପ୍ରେମୀମାନେ, ଠାକୁର ଦେବତାମାନେ
ନିଶ୍ଚିନ୍ତ ଶୋଇ ଥାଆନ୍ତି
ନିଜ ନିଜ ଫ୍ଳାଟରେ ।

କଳ୍ପନାକୁ ଚୀରି ଉଖାରି
ଉଡ଼ି ଆସନ୍ତି
ଅପର୍ଯ୍ୟାପ୍ତ, ଗଦ୍‌ଗଦ୍ ବିହ୍ୱଳତା
ଉଲ୍ଲାସ, ଯନ୍ତ୍ରଣା
ରକ୍ତ, କ୍ଷତ ଦୁର୍ଘଟଣା
ଅନିଦ୍ରାରେ ଅଣ୍ଡାଳି ହୁଏ କବିଟି
ସକାଳ ଯାଏଁ-
ଦିଗ୍‌ବଳୟକୁ ଅନାଏଁ
ସୂର୍ଯ୍ୟର ଲକ୍ଷକୋଟି ଉଷ୍ମ ଚୁମ୍ବନ
ଗଳିଯାଏ ମାଟିରେ
ମାଟି ଉପରେ ଶୋଇପଡ଼େ ସେ ।
କାନ୍ଦି ନ ପାରିବାର
କଠିନ ଲୁହରେ ମୁହଁଘଷି
ଚୁପ୍ ଚୁପ୍ କହିଉଠେ
କ୍ଷମାକର, ଏଇ ଥରଟି ।

❑

## ଲୋଡ଼ାନାହିଁ

ସ୍ୱର୍ଗପୁର ଅଛି ?
ମହାଶୂନ୍ୟ
ଗ୍ରହ ନକ୍ଷତ୍ର, ଛାୟାପଥ
ସବୁଠି
ଶକ୍ତିମାନ, ଅଶକ୍ତକୁ ଗିଳୁଛି-

ଯଦି ଅଛି କିଛି
ତେବେ ଏଇଠି
ଅଛି ଭଲପାଇବା, ଅଛି ଲୋଭ
ଜଳୁଛି ଘିଅଦୀପ
ତ୍ୟାଗଅଛି, ଅଛି ପ୍ରତ୍ୟାଶା
କୋଟି କୋଟି ପ୍ରାଣଶକ୍ତିରେ
ଝଲସି ଉଠୁଚି ପୃଥ୍ୱୀ
ତୁମେ ଅଛ, ମୁଁ ଅଛି ।

ପ୍ରତାରଣା, ହତାଶା
କୋରି ଖାଉଥିବା ଘା' ଅଛି
ଦୁର୍ଘଟଣା, ଦୁର୍ବିପାକ
ଅଛି ବି ରୋଗ, ପୋକ
ଶିହରଣ

ଆବେଗର କୋରକ ।
ଆମର ପରସ୍ପରକୁ ଝୁରିହବା
ଓଠର ସ୍ୱାଦ ଚାଖିବା
ହାଲ୍କା ଗୁଡ଼ିଟି
ଗଛରୁ ଖସି ପଡ଼ିବା
କିଶଳୟ ରଂଗର ଚଢ଼େଇଟେ
ଗୀତ ଗାଇବା
ମହାରଣ୍ୟ
ଚୁପ୍‌କିନା ପଦେ କାନରେ କହିଦବା
ନିର୍ଝରଟେ ଆଖିରେ ରହସ୍ୟ ବୋଲିବା
ସବୁ ତ ଘଟିଲାଣି ଏଇଠି ।
କ୍ଷଣକ୍ଷଣ ନବନାରୀ ରୂପରେ
ଆଲିଂଗି ଧରୁଚି
ଯେ ସର୍ବ ସୁନ୍ଦରୀ ମାଟି
ସ୍ୱର୍ଗ ଆଉ
ଲୋଡ଼ାନାହିଁ ତା'ଠି ।

❑

# ଆଜି ନୁହେଁ

ସେଦିନ, ମୋ ନିଜ କବିତାର କୁମାରୀତ୍ୱକୁ
ମୁଁ ଲଂଘନ କଲି
ଭବିଷ୍ୟ ଭିତରେ
ପୋତି ଦେଲି ଆଙ୍ଗୁଠି ସବୁ,
ତୋ' କଥା ତ, ଆଜି ମୁଁ ଭାବୁନାହିଁ ।

ଯୋଉ ଭୁଲ୍ ତୁ ଆଦୌ କରିନୁ
ସେ ଫେରି ଆସିଚି ପୁଣି
ଚୌକାଠରେ, ଖସି ଯାଉଚି ତାର ଛାଇ
ଅଥଚ, ତୁ ଚୌକାଠ ବି ଡ଼େଇଁନୁ
ତୋ କହିଲା ଶବ୍ଦ
କୁହାଯାଇନି କେବେ ।
ଲାଇବ୍ରେରୀକୁ, ରଂଗ ବେରଂଗ ଫୁଲର ରାସ୍ତାଦେଇ
ଚାଲିଗଲା ବେଳେ ମୁଁ, ଦେଖିଚି ତତେ
ତୁ ଅଟକିଚୁ ଘଡ଼ିଏ, ସହପାଠୀଙ୍କୁ ଆଡ଼େଇ
ପଦେ ଗପସପ ତ ଦୂରର କଥା
ଠେଲି ନେଇ ଯାଇଚି ସତେକି ମତେ
କେହି, ଜୋର୍‌କରି ତଡ଼ିନେଇଚି
ମୋ ସହପାଠିନୀଙ୍କ ମେଳରୁ, ତୋ ସାମ୍ନାରୁ ।
ମୋ ହୃଦୟରୁ, ରକ୍ତ ବୋହିଯାଇଚି

ଜୋତା ଭିତରୁ, ବାଲି ଝଡ଼ିଗଲାପରି ଧାରେଧାରେ ।
ଭଗବାନ୍ କି ସଇତାନ୍
କିଏ କେଜାଣି, ବଂଚିତକରିଚି ମୋତେ
ମୋ ସାଧାରଣତ୍ୱରୁ
ଭାଙ୍ଗିପଡ଼ିଚି ଝଡ଼, ଶୂନ୍ୟରେ,
ବୈକୁଣ୍ଠରେ ?

ତୁ ମୁଁ, ଏତେ ନିକଟର ହୋଇଥିଲେ, ଦି' ଦିନ
ଖୋଜୁଥିଲେ ପରସ୍ପରକୁ,
ଶୋଇଥିଲେ ମୁଣ୍ଡରଖି କୋଳରେ
ଏକାନ୍ତରେ ନୁହେଁ, ସମୁଦ୍ର ବାଲିରେ ।

ତୋ ଜାମାରୁ, ବାସ୍ନାବାରିଥିଲି
ନବ ଯୁବକର ବାସ୍ନା
ସମୁଦ୍ର, ଉଡ଼େଇ ନେଲା ସେ ବାସ୍ନାକୁ
ତତ୍‌କ୍ଷଣାତ୍,
ନିର୍ବିକାର ସମୁଦ୍ର, ମନେରଖି ନଥିବ କଦାପି ।
ଆମେ କିନ୍ତୁ, ଖୋଜୁଥିଲେ ପରସ୍ପରକୁ, କାହିଁକି ?
ସମୁଦ୍ର କ'ଣ ଜାଣିଥିଲା, ଜାଣିଥିଲା ବୋଧେ
କେହି କାହାକୁ ଶେଷଯାଏଁ ଆଉ ଦେଖି ନ ପାରି
ମରିଯିବା ବୋଲି ?

❑

# ଜାଗା ଅଛିକି ସ୍ୱର୍ଗପୁରରେ ?

ତା'ର ଅପର୍ଯ୍ୟାପ୍ତ ବିସ୍ତାର,
କେତେ କେଜାଣି ଗ୍ରହ, ନକ୍ଷତ୍ର, ଛାୟାପଥ
ଆମ ଜାଣିବାରେ ଖାଲି ସ୍ୱର୍ଗପୁର ।

ଠାକୁରଙ୍କ ପାଇଁ, ଜଗନ୍ନାଥ, ଶିବ, ରାମ, ହନୁମାନ
ବଡ଼ ବଡ଼ ଧର୍ମ ପ୍ରଚାରକ, ବ୍ରାହ୍ମଣ, ପୁରୋହିତ
ଓ ଆଧ୍ୟାତ୍ମିକ ଗୁରୁଙ୍କ ପାଇଁ କେବଳ ?
ସେମାନେ ଅବଶ୍ୟ ଅମର-
ସେମାନେ ତ ରହିବେ ସ୍ୱର୍ଗପୁରରେ ।
ହେଲେ, ଆମ ମରଣଶୀଳ ପଶୁପକ୍ଷୀ
ମନେକର, ହାତୀ, ଭାଲୁ ନହେଲେ ଅନ୍ୟଠାକୁର ମାନେ
ଭକ୍ତମାନେ- ଏମାନେ ମରିଗଲେ କ'ଣ
ସତେରେ ଯାଙ୍କମାନଙ୍କ ପାଇଁ
ସ୍ୱର୍ଗପୁରରେ ଜାଗାନାହିଁ ?

ଏମିତି କି ଘୁଷୁରି, ନହେଲେ
ମୂଷା ହେଟା, ଏମାନେ ଯାଇ ପାରିବେନି ସ୍ୱର୍ଗକୁ ?
ଏମାନେ ଅବଶ୍ୟ ଟିକେ ବୋକା—
ତଥାପି, ମୁଁ ଭାବେ, ମୁଁ କୁଆଡ଼କୁ ଯିବି ?
ଯେତେକ ଦିନ ବିତିଗଲାଣି ସେସବୁ ତ କୁହୁଡ଼ିଆ–

ମୋ ବାପା ମାଆଙ୍କ ମସ୍ତକ ଭଳି
ଦିଶେ ଦିଶେନା-
ଅବଶ୍ୟ, ଆଗାମୀକୁ ତ କେହି ଦେଖିପାରେନା ।
ନଈ ସେପାରି  ଏବେ ବି ଅନ୍ଧାରୁଆ
ତଥାପି ପଶୁ ପକ୍ଷୀମାନଙ୍କ ହଲ୍‌ଚଲ୍ ଶୁଣାଯାଉଛି–
କୋଇଲି, ବଣି, କି ଗୁଣ୍ଡୁଚି କି ହାତୀ, ଭାଲୁ
ନହେଲେ କୁକୁର
ସେମାନେ ତେବେ କୁଆଡ଼େ ଯିବେ  ?
ମୁଁ ନ ଯାଏଁ
ସେମାନେ ଯାଆନ୍ତେ କି !
ସେମାନଙ୍କ ପାଇଁ ଜାଗା ଥାଆନ୍ତା କି
ସ୍ୱର୍ଗପୁରରେ  !



## ଶବ୍ଦକୁ ଖୋଜିଲି

ଭଅଁରର ଗୁଣୁଗୁଣୁରେ
କପୋତର କୁହାଟରେ
ଗଛର ଚେରମୂଳେ,
ପୁଣି ରାତିସାରା ଅନିଦ୍ରା
ନୂଆ କବିର ବାଟଖୋଜାରେ,
ମାଆ କୋଳରେ ଖୋଜିବାକୁ
ଭୁଲିଗଲି କିନ୍ତୁ ।

ଘାସ ପଡ଼ିଆ ଭିତରେ ଅଣ୍ଡାଳିଲି
ଅଶାନ୍ତିରେ ଜଳୁଥିବା ଲୋକଟିର ଛାତିରେ
ରହିଗଲା କି କୋଉଠି ?
ନାଁ ମୋର ଦିବ୍ୟ ସୁନ୍ଦରୀ ଝିଅଟିର ଆଖିପତାରେ ?

ଶବ୍ଦ ଖୋଜିବା ସହଜ ନୁହେଁ ଏଡ଼େ
ଛାତି ଧୁନ୍ଦାଳି, ଲୁହ ଉତାରି
ସାଦା ଫର୍ଦ୍ଦ ଉପରେ ପ୍ରେମର ଦସ୍ତଖତ ପରି,
ସେ କୋଉଠି ଥାଏ, କେମିତି ବା ଓହ୍ଲାଏ
ଅଧା ଖସେ ତ ଅଧା ଲୁଚିବସେ-
ତୁମେ କେମିତି ପାଆନ୍ତ କହତ !
ତୁମ ମାଆ କୋଳରେ ହିଁ ସେ ଲୁଚିଥାଏ
ଅଥଚ, ତୁମେ ଅଣ ନଜର କର । ❑

## ଯୋଡ଼ି ଦେବାର ସାହସ

ଜାମୁ ଡ଼ାଳିଟିକୁ ଭାଙ୍ଗିନେବି ଧରିଲି-
ତଳକୁ ଚାହିଁଦେଲା ବେଳକୁ
ଗଛ ଗଣ୍ଡିରେ ଆଉଜି ବସିଚି ଲୋକଟି
ଛାଇ ପୋଉଁଚି,
ନାଁ ଥାଉ, ଡ଼ାଳଟିକୁ ଭାଙ୍ଗିଲି ନାହିଁ
କେଜାଣି ଆଉ କିଏ ବଂଚିତ ହେବ
ଏଇ ଛାଇ ଟିକକରୁ
ଥକ୍କା ମାରିବାରୁ !

ସ୍କୁଲ ଫେରନ୍ତି ମାଷ୍ଟ୍ରାଣୀଟେ ମୁଁ
ତଣ୍ଟି ଆଫା ଆଫା ଶୋଷରେ
ଘରେ ଛାଡ଼ି ଆସିଚି କୋଳଛୁଆ
ରାସ୍ତାକଡ଼ରେ ମରି ପଡ଼ିଚି ଭିକାରୁଣୀଟି
ପାଖରେ ବାଳୁତ ତା'ର ରୁଟି ଖଣ୍ଡିଏ ଖାଉଚି
ବେଢ଼ିଛନ୍ତି ଦୟାଳୁ ଲୋକେ,
ହେଲେ ରିକ୍ସା ବଢ଼ାଇଲି ଆଗକୁ ।

ଘରକୁ ଫେରି ଆସିଲି ସତ,
ନାଁ ଖାଇ ପାରିଲି, ନାଁ ଶୋଇପାରିଲି
ସାରାରାତି ଲୁହ ବର୍ଷିଲି

ଶିଶୁଟିର ମୁହଁକୁ ଟେକି ଧରିଲା ମୋର କଳ୍ପନା
"କ୍ଷମାକର୍ କ୍ଷମାକର୍ ମତେ" କହି ଲାଗିଲି ।
ଛୁଞ୍ଚିସୂତା ଧରି ସିଲେଇରେ ଲାଗିପଡ଼ିଚି ମୁଁ-
ଦୁର୍ଦ୍ଦିନର, ଅସହିଷ୍ଣୁତାର, କ୍ରୋଧର, ଗର୍ବର ଫାଟମାନଙ୍କୁ
କେମିତି ଯୋଡ଼ି ଦିଅନ୍ତି ମୁଁ-
ବୋହି ଯାଉଚି ସମୟ
ହାଲିଆକରି ପକାଉଚି ମତେ
କାଲି ସକାଳେ ମୋ କୋଳରେ ଖେଳୁଥିବା ଛୁଆଟି
ଆଜି ଅନାଉଁ ନାହିଁ ମୋ ଆଡ଼େ–

ମୁଁ ଯେ ଏଣେ ଫାଟ ଯୋଡ଼ି
ସିଲେଇ କରୁ କରୁ
ନଇଁ ପଡ଼ିଲିଣି ଧୀରେ ଧୀରେ
ତା' ଗର ନଜରରେ ।



# ଖୋଜିବା ପାଇଁ ତାକୁ

ମୁଁ ତାକୁ ଖୋଜେ—
କ୍ଲାନ୍ତିରୁ, ଦୁଃଖରୁ, ମୁକୁଳାଇ ଦେବ ବୋଲି
ମୋତେ ମୋକ୍ଷ ଆଣିଦେବ,
କିନ୍ତୁ ସତ କହୁଚି
ମୋକ୍ଷ କ'ଣ ମୁଁ ଜାଣେ ନାହିଁ
ବୋଧହୁଏ, ସବୁଠୁଁ ବେଶି ଆନନ୍ଦ—

ଭାବେ, ମୋ କଳ୍ପନାକୁ ସେ ଉଦ୍ଧାରିବ
ଆନନ୍ଦକୁ କରିବ ସଜାଗ
ଓଠରୁ ଓଠ
ସ୍ଫୁଲିଙ୍ଗରୁ ସ୍ଫୁଲିଙ୍ଗ ବ୍ୟାପିବ-

ଏତେବଡ଼ ସମାଜଭିତରେ
ଆମେ ନାମହୀନ
ସେଇଥିପାଇଁ କି କ'ଣ
ମନହୁଏ, ନୀରବ ମୁହୂର୍ତ୍ତରେ
ଏକା ଏକା ଭାଙ୍ଗିପଡ଼ିବା
ଆବେଗ ସୁଅରେ ଉବୁଟୁବୁ ହବା
ଆବେଗକୁ ଖୋଲି ପକାଇବା,
କିଛି ନ ଭାବି, ନ ଚିନ୍ତି

ସୂକ୍ଷ୍ମତାକୁ, ଐଶ୍ୱର୍ଯ୍ୟକୁ
ଚିତ୍ର ଆଉ ଶବ୍ଦକୁ
ସତେ କି ଜହ୍ନକୁ
କି ଜହ୍ନର ଗୋଟିଏ ବିଜ୍ଞାପନକୁ-
ଧ୍ୟାନ କରିବା ।

ସତକୁ ସତ କବିତା ଯଦି ଆସେ
ତା'ର ନିର୍ଯ୍ୟାସକୁ
ଧରି ରଖିବାକୁ ଖାସ୍
ମୁଁ ତାକୁ ଖୋଜେ-
ଥକିଯାଏ, ମରିଯାଏ
ବଂଚେ, ଆହୁରିଥରେ ବଂଚେ
ତାକୁ ଖୋଜିବା ପାଇଁ ବଂଚେ
ତାକୁ ଖୋଜିବା ପାଇଁ ବଂଚେ ।



## ଏଇ ବଗିଚା

ଉପନ୍ୟାସର
ପବନରେ ଉଡ଼ିଯାଉଥିବା
ଅବିନ୍ୟସ୍ତ ପୃଷ୍ଠାଗୁଡ଼ିକପରି
ଆଗ, ପଛ, ତା'ପରକୁ ମଝି-
ହେଲେ, ଆମେ ଭାବିଚେ
ଆମେ ଦୁହେଁ ସବୁଆଡ଼େ ଏକାଠି- ।

କେମିତି ପବନରେ ଝୁଲିଲା ଆମର ଆଗମ
ସ୍ୱାଗତ ଚିହ୍ନଭଳି
ଝଲିଲା ଅନ୍ଧାରରେ
କାଦୁଆ ପାଣିଧାର ଭିତରେ ।

ମୋର ଉଲ୍‌ପରି ନରମ ଦିହକୁ
ମୁଁ ଅଲଗା କଲି ।
ଯାଉଚି କୁଆଡ଼େ
ମୁଁ ଜାଣିନି, କିନ୍ତୁ
ତାରାଲୋକରେ ଚିକ୍‌ଚିକ୍ ଗଛତଳେ ଯାଉଚି
ସେ ଗଛମାନେ ଗୀତ ଗୁଣୁଗୁଣଉଛନ୍ତି ।
ହେଲେ, ତୁମେ ରହ ଟିକେ
ମୟୂରର ପେଟପରି ତୁମ ସାବ୍‌ଜା ତଳିପେଟରେ

ମୁଁ ମୁହଁ ଘଷେଁ ।
ଶରତ୍ ଓ ଶୀତରେ
ଆମେ ନିଆଁ ଜାଳେଁ
ରୁଦ୍ରାକ୍ଷ ଜପାମାଳିପରି
ତୁମ ମେରୁଦଣ୍ଡରେ
ହାତ ଚ଼ଲାଏଁ, ତା'ପରେ ଗୀତ ଗାଏଁ ।

କାଦୁଅ ସଣସଣ, ଚଢ଼େଇ ମଳ ଭଣଭଣ
ଓ ମେଞ୍ଚାଏ ପୋକ ଏଠି-
ତୁମେ ଗ୍ଲୋବ୍ ପିନ୍ଧି
ଆଡ଼େଇ ଦିଅ ତ ସେମାନଙ୍କୁ
ମୁଁ ଗୀତ ଗାଇବି
ନୂଆ, କଅଁଳ ଘାସର ଗୀତ ।

ଏ ସନ୍ତସନ୍ତିଆ, ବିପଜ୍ଜନକ ବଗିଚାରେ
ମତେ ଆଉ ମୁହୂର୍ତ୍ତେ ଧରିବାକୁ ଦିଅ ତୁମକୁ,
ମୋର ଏଇ ମରଣଶୀଳ ହାତରେ
ଧରେଁ, ଝୁଲାଏଁ
ତୁମ ଓଠକୁ ମୋ ଓଠରେ ଖୋଲେ
ଗୀତଗାଏଁ ।"

❑

## ଠୋପାଏ ସଜରକ୍ତ

ସଜରକ୍ତ ଠୋପାକ ଦବାକୁହବ
ଅନ୍ତତଃ ଶେଷଧାଡ଼ିରେ ।
ଅସଂଖ୍ୟ କବିତା
ରଂଗ ବଦଳେଇ, ଲୁଚିକି
ବାରି ନ ହୋଇ, ଆବୃତ ହୋଇ
ରହିଛନ୍ତି-
ଆମେ ନିତିଦିନିଆଁ ଜୀବନରେ
ଯେଉଁଠି ରହୁଚେ଼
ସବୁଠିଁ କବିତା ।

ଅନ୍ଧାରରେ ଯାହା ଛାଡ଼ି ଯାଇଚ଼ି କବି-
ସାମାଜିକ ଜୀବନରେ ଘେରିଥିବା
ବର୍ଷା-ଓଦା ଅଳିଆଗଦା ଭିତରେ
ଲୁଚିରହିଚି ଲୁହାପାତ
ତା' ଭିତରେ ରହିଚ଼ି କାବ୍ୟିକ ସତ୍ୟ ।

ତୁମେ ହାମୁଡ଼େଇ ପଡ଼ କବିତା ଉପରେ
ଆଉଜି ଯାଅ, ନହେଲେ ଅପେକ୍ଷାକର,
କବିତା ତାର ଗୋପନୀୟତା ଖୋଲିଦବ
ତୁମକୁ ନିହାତି,

ବାଘର, ଭାଲୁର କି ହରିଣର ହେଉ
କି ନିଜ ଛାତିର ହେଉ
ରକ୍ତ ଠୋପାଏ କିନ୍ତୁ ଢାଳିଦବାକୁ ହବ ।

ଶୋଷାତୁର ପାଠକପାଇଁ ଆଶା
ଅଳିଆଗଦା ଭିତରେ ଲୁଚିଥିବ ଯଦି ବୀଜଟିଏ
ସେ ମୁଣ୍ଡଟେକିବ, କଅଁଳିବ ।

କବିତା ଲେଖିବା କାମଟି
କେତେ କେଜାଣି ଧ୍ୟାନମଗ୍ନତାର
ଆନନ୍ଦର, ସନ୍ତୋଷର
ସେଇ ରହସ୍ୟ ପ୍ରକଟ କରିବ ଯଦି,
ବସ, ଚେଷ୍ଟାକର
ବିଫଳତା ଭୋଗିବା,
ଛଟପଟ ହବାତ ନିୟତି-
ଏ କଷ୍ଟ ସଫଳ କବିତାର ।
ଯଦି ଅହଂକାରକୁ ବଳି ନ ଦେଲ
ଆଘାତ ନ ପାଇଲ
କବିତା ହେଲାନାହିଁ ବୋଲି ବୁଝିନିଅ ।

ମନେରଖ
କବିତାର ଅଂସଖ୍ୟ ରୂପ
ସେ ଯାହା ବି ହେଉ
ନିହାତି
ନିଜ ଛାତିର ସଜରକ୍ତ ଠୋପାକ
କବିତାରେ ରଖିଦିଅ– ।



# କବିଟିଏ, ନାରୀଟିଏ

ସେ ଛାଡ଼ି ଆସିଲା ସେଇଠି-
ତେରବର୍ଷ ତଳେ ତାର କବିତା ପ୍ରେମୀକୁ
ଭିନ୍ନଜାତି, ଭିନ୍ନରୀତି
ଚକ୍‌ଚକ୍ ଶ୍ମଶ୍ରୁଳ, ପଗଡ଼ି-
ତୀକ୍ଷଣ୍ ଅନ୍ତର୍ଭେଦୀ ଆଖି- ।

କବିଟିଏ ନାରୀଟିଏ କହିବ କାହାକୁ ଭଲା
କୁହା ନଯିବା କଥା ଯାହା,
ଅନୁଭବରେ ଆସେ ଯଦି
ପ୍ରକାଶ କରିବାକୁ ଚାହିଁଲେ
କେମିତି କହିପାରିବ ?

ଅନୁଭବକୁ ତାର ଖଣ୍ଡ ଖଣ୍ଡ କାଟି
ପୂରେଇଦେଲେ ସୁଟ୍‌କେଶ୍‌ରେ
ସେଥିରୁ ବି ରସ ବୋହିବ-
ଆଦ୍ୟ ଯୌବନ, କୈଶୋର ନସରୁଣ୍ଣୁ ଯୌବନ
କେତେ ଅପରିଣତ !
ଦର୍ପଣ ସାମ୍ନା ସଜସଜ ଉନ୍ମୀଳିତ ଦେହ
ଫ୍ରକ୍ ଭିତରର ଉଦ୍‌ବିଗ୍ନତା

କହିବ କାହାକୁ
ନା ଦେଖାଇବ କାହାକୁ ?

ମଧ୍ୟ ଯୌବନ କାଳର
ସମବୟସ୍କ ସେ କବିତାପ୍ରେମୀ,
ଅଳ୍ପ ଦେଖାରେ କବିତା ଶୁଣି
ଚିଠି ଲେଖିଲା-
'ସଂକ୍ଷିପ୍ତ ହୋଇପାରେ
ସାକ୍ଷାତର ସମୟ
ହେଲେ, ତୁମର ମୋର ସାକ୍ଷତର
ଗଭୀରତା ଅମାପ ।"
ସାକ୍ଷାତର ଗଭୀରତା ?
ସେ ପୁଣି କଅଣ ?
ବୟସବେଳେ ଯିଏ
ପତିର ଦେହ-ତୃଷାରେ
ବ୍ୟବହୃତ କେବଳ
ସେ କେମିତି ବୁଝନ୍ତା-
ସାକ୍ଷାତର ଗଭୀରତା ?

ତେଣୁ
ସେ ଲୁଚି ରହିଲା
ଥରିଲା, ଛଟପଟ ହେଲା
ଧାଇଁଯିବାକୁ ଇଚ୍ଛାକଲା,
ଅନୁମାନ କଲା
କେଡ଼େ ଅର୍ଥର, ଏକୁଟିଆସେ !
କିଏ ଯଦି ଭଲପାଏ, ଖୋଜେ
ସେ ଆଘାତ ପାଏ ।

ସାକ୍ଷାତର ଗଭୀରତାକୁ
ସେ କଳି ସାରିଛି
ସେବେ ଠୁଁ- ସେ ଚିଠି ପଢ଼ିଲାବେଳୁ ।
ଭୟ ପାଇଛି
ଗଭୀରତାରେ ବୁଡ଼ିଯିବ ଯଦି !
ଦୁଇ ହାତରେ
ଗଭୀରତାକୁ ବୁଜି ଧରିଚ଼ି-
ଆଜି
କ୍ଷମା ଋହୁଁଚ଼ି ସେ-
ସେଦିନର ସେ କବିତା ପ୍ରେମୀର
ସାକ୍ଷାତର ଗଭୀରତା ଠୁଁ ।



# ଭିନ୍ନ

କବିତା ଲେଖିବା ଓ ପଢ଼ିବା
କାମଟି ମୋତେ କେତେ କେଜାଣି
ଧ୍ୟାନମଗ୍ନତାର ଆନନ୍ଦ ଓ ସନ୍ତୋଷ ଦେଉଛି
ତାହା ଅବର୍ଣ୍ଣନୀୟ ।
ସେଇ ରହସ୍ୟକୁ ପ୍ରକଟ କରିବାକୁ
ମୁଁ କବିତା ଲେଖିବାକୁ ଚେଷ୍ଟାକରେ
ବସେ, ଅବଶ୍ୟ ଅନେକଥର
ବିଫଳତା ହିଁ ଭୋଗେ-
ଛଟପଟ ହୁଏ ।
ଏଇଟା କ'ଣ ହେଇପାରେ ଆଘାତ
ସଫଳ କବିତାର ?



# ମିଛ

ମୁଁ ପାହାଡ଼ ଆଡ଼କୁ ଯାଉଛି
ପାହାଡ଼ର ଛାଇ ଆଗେଇଆସୁଛି ମୋ ଆଡ଼କୁ
ଆକାଶ ପାଖାପାଖି ଗୋଧୂଳିରେ ଏଇଲେ
ହ୍ରଦଟା ଷ୍ଟିଲରଂଗର ଦିଶିଲା ।
ପାହାଡ଼ ବି ଠିକ୍ ସେଇ ରଂଗର ଛାଇ
ମୋ ଆଡ଼କୁ ବଢ଼ାଇ ଦେଲା,
ଆମେ ଯେମିତି ଅତିଥିମାନଙ୍କୁ ସ୍ୱାଗତକରୁ
ଠିକ୍ ସେମିତି ।

ମୁଁ ଯେମିତି ଭଲପାଏ ସେ କିଶୋରଟିକୁ
ଧନୀଘର ନୁହଁ, ସାଦାଚ଼ଲଣି ତା'ର
କିନ୍ତୁ ଜହ୍ନଫୁଟେ ତା' ହସରେ ।

ମୋ ଶବ୍ଦଗୁଡ଼ାକୁ
ଗୋଟେ ବ୍ୟକ୍ତିଗତ ପବନ
ଗିଳି ପକାଇଲା ବେଳେ
କ'ଣ ମୁଁ କହିବି ତାକୁ ଏଇଲେ ?
ମୋ ଭାବନା କେଡ଼େ ବଡ଼ ପାହାଡ଼

ଭଲ ପାଇବା କେଡ଼େ କ୍ଷୁଦ୍ର !
ହାତ ବଢ଼ାଏ ମୁଁ, ପାଣିଗ୍ଲାସେ ଦିଏ ତାକୁ
ପିଠି ଥାପୁଡ଼ାଏ ଗେହ୍ଲାକରେ
ଯାହା ଆଦୌ ମିଛ ନୁହେଁ ।

କିଏ କହିଲା, କବିତା ଖାଲି ଦେଖାଶିଖା
ଖାଲି ଷ୍ଟାଇଲ୍ ମରା—
ହେଲେ ବୁଦ୍ଧିମତ୍ତା ବି ଗୋଟେ ଷ୍ଟାଇଲ୍
କଳା, ବିଜ୍ଞାନ ସବୁବୋଧେ ଷ୍ଟାଇଲ୍
ରାଜନୀତିରେ
ଥାଏ ମୂର୍ଖତା ଓ ଷ୍ଟାଇଲ୍ ମିଶିକି ।
କିନ୍ତୁ ଷ୍ଟାଇଲ୍ ନଥାଏ କବିତାରେ
ଥାଏ ହୃଦାଲୋଚନା-ଥାଏ ଭଲପାଇବା ।



# ଆଦିଗୁରୁ

ତୁମେ ଚାଲିପାରନା, କଥାକୁହନା
ପରିକ୍ରମା କରନା କି ପ୍ରବଚନ ଦିଅନା
ସବୁକିନ୍ତୁ ଅଙ୍ଗେନିଭାଅ, ବୁଝିପାର,
ଚୁପ୍‌ଚାପ୍ ଥାଅ, କିନ୍ତୁ, କ'ଣ ନ ଦିଅ !
ଘର, ଭାତ, ପାଣି ପବନ
ଢ଼ାଳି ଦିଅରସ, ବିଂଚିଦିଅ ସୁବାସ
ଭୋକଶୋଷ ମେଣ୍ଟାଅ–

ଖରାରେ ପୋଡ଼, କୁହୁଡ଼ିଶୀତରେ ଥରିଯାଅ
ବର୍ଷାରେ ଭିଜୁଥାଅ ଯେ ଭିଜୁଥାଅ
ଝଡ଼ରେ ଖଣ୍ଡ ଖଣ୍ଡ ହୁଅ, ଅଂଗ ହରାଅ
ବଜ୍ର ନିଆଁରେ ଜଳିଯାଅ
ଉତ୍ତାଳ ସମୁଦ୍ରକୁ ରୋକିନିଅ
ସତରେ କୋଡ଼ କୋଡ଼ ଯନ୍ତ୍ରଣା ବା ନ ସହ !

ତୁମ ଭିତରେ ପରୀଥାଏ,
ଦେବତା ବାସକରେ ତୁମଠିଁ
ତୁମକୁ ଆଶ୍ରାକରେ ଫର୍ଫର ଚଢ଼େଇକୁଳ
ତୁମେ ଉଢ଼େଇ ଦିଅ ଡ଼ିମ୍ବଫୁଟାଇ ଉର୍ଦ୍ଧ୍ୱକୁ
ଦଳକୁ ଦଳ, ବଂଶ ବିସ୍ତାର କର ।

ସମସ୍ତଙ୍କୁ ଭରପୂର କରିବା ବ୍ରତରେ ତୁମେ ଅଟଳ ।
ମାଟିକୁ ଭେଦିଭେଦି ଯାଅ ଗହୀରରୁ ଗହୀର
ଆକାଶକୁ ହାତଟେକି-ଉପରୁ ଉପର ।
ଆତତାୟୀକୁ ବି ଆଶ୍ରାଦିଅ, ଝାଳପୋଛିଦିଅ ତା'ର ।
କାଠହଣା ଚଢ଼େଇର ଥଣ୍ଟପାହାର
ସଣସଣ ଉଇ, ଜନ୍ଦାଙ୍କ ପଲ,
ସରୀସୃପଙ୍କ ମନମତାଣିଆ ଖେଳ, ଆହାର
ସବୁ ସଜାଡ଼ି ଥାଅ ତୁମେ–
କେଜାଣି ଯେ କି' କାଳ !
କେହି ଚିହ୍ନନ୍ତି ନାହିଁ ତୁମକୁ ।

ହେ ନିରାଡ଼ମ୍ବର ଆଦିକାଳର ଦୀକ୍ଷାଗୁରୁ,
ଦୀକ୍ଷିତ କର ହୃଦୟକୁ ଆମର
ଅସ୍ଫୁଟ ଉଚ୍ଚାରି ଲାଗେ ମୁଁ
"ଋଷିପ୍ରବର", 'ଗୁରୁ ପ୍ରବର' ।



## ଲେଖୁ ଲେଖୁ...

ଖଟ ଉପରେ ହାତ ବଢ଼ାଏ, ଅଣ୍ଡାଳେ
ମୋର ଅସୁସ୍ଥ ଶରୀର ବାହାରେ
ମୁଁ ମତେ ଖୋଜେ
ଭାବେ, ମୁଁ ପ୍ରକୃତରେ ଖଟର ସେ ପାଖରେ ।
ପର କ୍ଷଣରେ ବୁଝେ
ମୁଁ ଏଇଠି, ଏଇଠି ଛଟପଟ
ସେ ପଟେ କେହି ନାହିଁ, କମ୍ବଳ, ଚ଼ଦର, ତକିଆ ଯାହା-
ଲେଖିବି, ଲେଖୁ ଲେଖୁ ଭୁଲିଯିବି
ସତ କଥା ବି ଏକଥା ।

କିଏ ସବୁ ଗୀତଗାଆନ୍ତି
ମୁଁ ବାରିପାରେ ବାସ୍ନା ସେମାନଙ୍କର–
କେବେ ବି ଆଜିଯାଏଁ ଥକି ପଡ଼ି ନଥିଲି ମୁଁ
ଆଜି କ'ଣ ଥକିଯିବି ? ନା-ନା ।
ଛାତି କ'ଣ ସେଇଜାଗା
ଯାହା ଭିତରେ ଥାଏ ଆତ୍ମା ?
ନାଁ ଏଇ ଶରୀର, କେବଳ ଭୁଲ୍ କରିବାର, ଆହତହେବାର ?
ଯାହା ଭିତରେ ଲୁଚି ରହିଥାଏ ଆତ୍ମା,
ମନେହୁଏ ଦିଶୁଚି
କିନ୍ତୁ କେବେବି ଦିଶେନା–
ନିଜକୁ ବୁଝାଇବାକୁ ପଡ଼େ- ଅଛି-ନିଶ୍ଚେ ଅଛି ।



## ମୁଁ କିଏ ତେବେ

କିଏ ?
କୁହୁଡ଼ି ଘେରିଥିବା ଗୋଟେ ମଂଚ୍-ମୋ ଜୀବନ
କାର୍ କାଚ୍‌ର ୱାଇପର୍ ଭଳି ମୋର ତୂଳୀଯାଏ ଆସେ ।

ଯେ ଗୋଟେ ମରୁଭୂମି, ଅନ୍ଧାର ରାତି-
ଝୁଲଣା ଖଟ ନାହିଁ, ଛୁଆ ନାହିଁ-
ସ୍ତ୍ରୀ ଲୋକଟେ ପ୍ରେମିକର କାନ୍ଧରେ ଆଉଜିପଡ଼ିବ
ତା' ବି ନାହିଁ ।

ଯା' ହଉ, କବାଟଟା ବନ୍ଦ ଅଛି-
କିଛି ବାହାରିଯିବନି କି ପଶି ଆସିବନି
ସବୁଆଡ଼େ ଲମ୍ବିଯାଉଚ୍ଛି ମରୁଭୂମି
ଉତ୍ସର୍ଗପଣର ବିପରୀତ ଯେ ।

କୁହୁଡ଼ି ଅପସରି ଗଲାଣି
କାନ୍ଥରେ ଲାଗିଗଲାଣି ଚ଼ିତ୍ରପଟ
ମୁଁ ଏଥର ମରିବିନି ବୋଧେ–
ମୁଁ ଭାବି ଚ଼ଲିଚ଼ି- ସୂର୍ଯ୍ୟ କହୁଚ଼ି ହଁ, ମରିବୁନିତୁ
ମରୁଭୂମି କହୁଚ଼ି-ପବନରେ ଉଡ଼ିବୁଲୁଥିବା ଧୂଳିକଣା ତୋର ସ୍ୱର
ତୁ ଥିବୁ ମରିସରି ଯିବୁନି– ❑

# କେଇ ମିନିଟ୍ ସମୁଦ୍ର

ଜୁଆରଉଠେ, ଭାଙ୍ଗିଯାଏ,
କେଇ ମିନିଟ୍ ମାତ୍ର
ଫେଣ, ଶିଉଳି ଗୋଡ଼ି, କୁହୁଡ଼ି ମାଡ଼ିଯାଏ
ବଉଦ ଡ଼ାହାଣକୁ ଘୁଂଚିଯାଏ ତ
ପାହାଡ଼ର ଗୋଟେ ଦର୍ଜାଦେଇ
ତୁମେ ଦେଖିପାରିବ-ଆଉ ଗୋଟେ କୁନିପାହାଡ଼
ଦଲୁଆ ଢେଉ ଭିତରୁ ।
ଛୋଟ ପଥରମାନଙ୍କୁ ଲହଡ଼ୀ ଆଉଁସିଯିବ–
କୃଷ୍ଣଚୂଡ଼ା ରଂଗର କଙ୍କଡ଼ାମାନେ ହାଉଯାଉ
ଅଥୟ ଗୋଡ଼ ତାଙ୍କର ।

ଆଉ ଦିନେ ଦିନେ ବି
ପାହାଡ଼ ପଥର ଭିତରେ ବାଟକାଟି
ଜହ୍ନ ପହଁରି ଆସିବ କୂଳକୁ
ବିଂଚିହେଇ ପଡ଼ିବ ଆମ ଉପରେ
ଦେଖ, ଅଭୁତ ସେ ପହଁରାଳିକୁ !

ସମୁଦ୍ର ସତକୁ ସତ ଏଠି କୋଉଠି ଅଛିକି ?
ସାତଟିଯାକ ରଂଗ ଖେଳି ବୁଲୁଚି ଯୋଉଠି !
ମୋ ଆଖପାଖରେ ହିଁ ସମୁଦ୍ର ।
ଛାତି ମଞ୍ଜରେ, ହାଡ଼ଶସ ଭିତରେ ।
ଏକୁଟିଆ ରାତିରେ
ମୁଁ ବରାବର ଡାକେ ତାକୁ,
ଯୋଉ ଶବ୍ଦରେ ମୁଁ ଡ଼ାକେ
ସେ ବି ମତେ ଡ଼ାକେ
ସେ ଶବ୍ଦ କୋଉ ନୂଆ ଗ୍ରହର କେଜାଣି
ଜନ୍ମାନ୍ତରର ବୋଧେ ।



# ଆଶା ଅନେକ

ପବନ ଶାନ୍ତ କିନ୍ତୁ ଗ୍ରୀଷ୍ମକାଳର,
ଶତାବ୍ଦୀ ଏକ ବିଂଶର–
ଆଉ ପବନ ନାହିଁ ଆଗପରି ଶୀତଳ
ଝୁପ୍ ଝୁପ୍ ।
ସମସ୍ତେ ତ ଆଗକୁ ଆଗକୁ ତରତର
ଗୋଟିଏ ରାସ୍ତାରେ ହଜିଯାଏ
ସମସ୍ତଙ୍କର ଆକାର-
ଆଉ ପଦ୍ମପୋଖରୀ କାହିଁ ?
କାହିଁ ପାଣିଜଳା, କାହିଁ ଘାସ,
ପତ୍ର ଅସଜଳ
ଶବ୍ଦ ଆଶ୍ରା ଲୋଡ଼ିବ କୋଉଠି ?
ସୂର୍ଯ୍ୟ ଉଏଁ ଅସ୍ତଯାଏ
ନିଘା ରହେନା କାହାର-
ତଥାପି, କବିର ଅନ୍ତରର କୋଉ ବିନ୍ଦୁରେ
ଜଗି ବସିଥାଏ-ସମୁଦ୍ରର ସ୍ୱର-
ଶୀତଳତାର ଉପଚାର ।



# କବିତାର ମୁକ୍ତି

ପ୍ରେମ ଖୁବ୍ ଏକୁଟିଆ
ତା'ର ଛନ୍ଦ, ତା'ର ଶବ୍ଦ ଖୁବ୍ ଅଲଗା-
ନୂଆ କବିଟିଏ ଛନ୍ଦଖୋଜେ, ଶବ୍ଦ ଖୋଜେ ।

ବେଳେବେଳେ ପବନ ରଦ୍ଧଦ୍ୱାର ହୁଏତ
ବଖରାଟିଏ ବଡ଼ ସଂକୁଚିତ ଥାଏ-
ଗୁଡ଼ାଏ ରୁକ୍ଷତା, କୋମଳତା କମ୍
ଏତେ କମ୍ ଯେ କବିଟି ଧୁନ୍ଦାଳି ହୁଏ-
ତଥାପି ସାହସ କରି
ମିଳିଯାଉଥିବା ଶବ୍ଦକୁ ସଜାଇ
ଉଡ଼ାଇ ଦିଏ ଝର୍କାବାଟେ ବାହାରକୁ ।

ସେ ଜାଣେ, କବିତା ଲେଖିଲେ
କିଛି ଗୁଡ଼େ ମିଳିଯିବନି-
ମିଳିଯିବାର ବାଟ ଅଲଗା, ଚହଟ ଅଲଗା ।

ତଥାପି କି ଅବୁଝା ଆଗ୍ରହ ତାର !
ଛଟପଟ, ଅନ୍ଧାର ଘରେ ଅଣ୍ଡାଳିବା
କ'ଣ କିଛି ଗୋଟେ ଖୋଜିବା
ପ୍ରାୟ ନ ପାଇବା ।
ହେଲେ ଶବ୍ଦ କେମିତି
ଶୁଖି ପଡ଼ି ନ ଯାଉ–
ସେ ଯୋଉଠି ଥାଉ
ସଜ, ଧପ୍, ଧପ୍, ସ୍ପନ୍ଦିତ ରହିଥାଉ-
ଯାହା ତାହା ପାଖକୁ ତ ନୁହେଁ
ଯିଏ ଝୁରି ମରିବ
ତା'ରି ପାଖକୁ ଆସୁ-
ଅଜାଡ଼ି ନ ପଡୁ
ପାଦ ଗଣିଗଣି ଆସୁ- ।

❑

## ଅହଂକାରର ଶବ୍ଦଖେଳ

ଶବ୍ଦର ଆଉଁସାଠାରୁ ଶୀତଳ
ଆଉ କିଛି ନାହିଁ-
ମୁଁ ଭୋଗିଛି, ବିଭୋର ହୋଇଛି ।

ଶବ୍ଦର ଅଗ୍ନିବର୍ଷୀ ତୀର ମୁନରେ
ଫାଟିଚି ବି ଥରେ ଥରେ
ଶବ୍ଦ କି ଅଦ୍ଭୁତ ! କି ଭୟଙ୍କର !

ଦେହକୁ ପୋଡ଼ିଦବା ଯେତିକି ସତ୍ୟ
ମନ ଓ ଚେ଼ତନାକୁ ଜାଳିଦେବା
କମ୍ ସତ୍ୟ ନୁହେଁ ।

ଅହଂକାରରେ, ଈର୍ଷାରେ
ଅମଣିଷପଣର ଉଦ୍‌ଗୀରଣରେ
ଶବ୍ଦ ହଜେଇ, ସାରିଚି଼ ତାର ମୂଳଅର୍ଥ ।

ବୃନ୍ଦାଏ ମାନବିକତା ବଂଚି ନପାରେ ଯେଉଁଠି
ସେଇଠି ଶବ୍ଦଖେଳେ,
ଅଥଚ ଦୂରାନ୍ତର ଚ଼ଢ଼େଇବସାରୁ
କିଚି଼ରି ମିଚି଼ରି ଚୁପ୍ କରିପାରେନା ।

କ'ଣ କରି ନପାରେ ଶବ୍ଦ !
ତୁମକୁ ମାରିଦିଏ,
ବଂଚାଇରଖି କଲବଲ କରେ ।

ପୁଣି ଏରକାବନର, ନାଗାସାକିର ଅଂଧାରକୁ
ସହ୍ୟ କରିପାରେ ତ ଏଇ ମଣିଷ !
ମୋ ଶରୀର ଓ ମନର ଅଣୁ ଅଣୁ ଭିତରେ
ମୁଁ ଲୁହ କାନ୍ଦେ, ରକ୍ତ କାନ୍ଦେ
ନିରୁପାୟ ଘୁଷୁରେ
ଥରେ, ମରେ ।

ଶବ୍ଦକୁ ନେହୁରା ହୁଏ, ଧ୍ୱଂସ କଦାପି ନୁହେଁ, କେବଳ ପ୍ରେମ-
ସେହି ପ୍ରେମରେ
ତୁ ଶୀତଳେଇ ଯା'-
ମଣିଷ ପଣିଆଁକୁ ଆଉଁସି ଦେ'—
ଅହଂକାରକୁ, କ୍ରୋଧକୁ ଭୁଲିଯା'—
ଆମକୁ ବଂଚାଇଦେ' ବଂଚାଇ ଦେ'—।

❑

## ମହୁ ଠୋପାକ

(ମଗ୍ନ ପାଇଁ)

# 

ନବନାରୀ,
ତୁମ ଛାତି ତଳେ
କଅଁଳ ମେଣ୍ଢାଲୋମ ପରି
ଗୁଂଫିତ ସେ ଜାଗା ଅରାକରେ
ମହୁ ଟିକକ ପୂରି ରହିଚ଼ି-

ଅଥଚ଼ ହୃଦୟହୀନ ପାଷଣ୍ଡ ମଣିଷର
ଅହଂକାର ତାକୁ ଶୋଷି ନେବାରେ ଧୁରନ୍ଧର-

କିନ୍ତୁ ମନେରଖ, ଯାହାକୁ ତୁମେ ଭଲପାଅ
ସେ ମହୁଠୋପକ ପହଂଚି ଯିବ ତା' ଓଠ ପାଖରେ ।

ଅନ୍ତରାତ୍ମାର ଗୋଟେ ଶକ୍ତିଅଛି
ଅପରାଜେୟ,
ଦର୍ପ, ଈର୍ଷା, ସ୍ୱାର୍ଥପରତା
ହାରିଯିବ ସେଇଠି ।

ଲୁହପୋଛି ପକାଅ-
କୌଣସି ନିଷ୍କରୁଣତା ମଣିଷକୁ ବଂଚାଇ ପାରିବନି କେବେ

ଛଟପଟ ହେଇ ମରିଯିବ ସେ ନିଷ୍ଠୁରତା,
ବଂଚି ରହିବ, ସଂଚିତ ରହିବ
ତୁମର କୋମଳ ସ୍ନେହ
ବଂଚେଇ ରଖିବ ଯେ ପୃଥ୍ୱୀକୁ ।
ସେତେବେଳକୁ
ତୁମ ପାଖରେ ଥିବି ମୁଁ,
ସେ ମହୁ ଠୋପାକର ଚିହ୍ନରା,
ମୁଁ ତାକୁ ବାଣ୍ଟିଦେବି ସଚରାଚର
ବିଶ୍ୱାସ କର ।



# କବି ଡ଼କ୍ଟର ପ୍ରତିଭା ଶତପଥୀଙ୍କ କୃତି ଓ କୃତିତ୍ୱ

ମାର୍ଫତ୍ : ଡଃ ଦେବାଶିଷ ପଟ୍ଟନାୟକ
୧, ଗ୍ରିନ୍ ପାର୍କ, ପଟିଆ ଷ୍ଟେସନରୋଡ଼, ପୋ: କିଟ୍ (K.I.I.T) ଭୁବନେଶ୍ୱର-୨୪

## ୧-କୃତି

କାବ୍ୟ କବିତା:

- ଅସ୍ତ ଜହ୍ନର ଏଲିଜି (୧୯୬୯)
- ଗ୍ରସ୍ତ ସମୟ (୧୯୭୪)
- ସାହାଡ଼ା ସୁନ୍ଦରୀ (୧୯୭୮)
- ନିୟତ ବସୁଧା (୧୯୮୦, ୧୯୮୫)
- ନିମିଷେ ଅକ୍ଷର (୧୯୮୫)- ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ୧୯୮୬
- ମହାମେଘ (୧୯୮୮)
- ଶବରୀ (୧୯୯୧) ଇଙ୍ଗା ଶିଳ୍ପଗୋଷ୍ଠୀ ପ୍ରଦତ୍ତ ଶାରଳା ପୁରସ୍କାର ପ୍ରାପ୍ତ, ୧୯୯୨
- ତନ୍ମୟ ଧୂଳି (୧୯୯୬)-କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ, ୨୦୦୧
- ଅଧା ଅଧା ନକ୍ଷତ୍ର (୨୦୦୧)-କର୍ଣ୍ଣାଟକର ଏନ୍.ଏନ୍. ଥିରୁମଲାମ୍ବା ଜାତୀୟ ପୁରସ୍କାର ପ୍ରାପ୍ତ, ୨୦୦୧ ।
- କହି ନ ହେଲେ (୨୦୦୬)
- ତୁମ ପାଇଁ ଥରେ, ସବୁଥର...(୨୦୧୧)

ନିବନ୍ଧ/ ପ୍ରବନ୍ଧ/ ରମ୍ୟଗଳ୍ପ/ ଭ୍ରମଣ କାହାଣୀ/ ଜୀବନୀ/ ଆତ୍ମ ଜୀବନୀ ସମାଲୋଚନା:

- କଳ୍ପନାର ଅଭିଷେକ (୧୯୮୦, ୧୯୯୮)
- ସ୍ପନ୍ଦନର ଭୂମି (୧୯୯୩)
- ପ୍ରତିଫଳନ (୧୯୯୩)

- ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ (୧୯୯୯, ୨୦୦୬) ଭାରତୀୟ ସମାଲୋଚନା ମଣ୍ଡଳୀ ପୁରସ୍କାର ପ୍ରାପ୍ତ)
- ଭାରତ ମାତାର ଲୁହ (୨୦୦୨)
- ବର୍ଣ୍ଣିଳ ଭୋଗପୁର...(୨୦୦୪)
- ସ୍ୱର୍ଗତା ସରଳାଦେବୀଙ୍କ ଜୀବନୀ (୨୦୦୮) ଏନ୍.ବି.ଟି. ଦ୍ୱାରା ପ୍ରକାଶିତ ।
- ଶୈଶବରୁ ସଂସାର (ଆତ୍ମକଥା) ୨୦୦୮, ନୂତନ ପ୍ରକାଶ-୨୦୧୫
- ନାରୀ ଅସ୍ତିତ୍ୱର ବାସ୍ତବତା: ବିବର୍ତ୍ତିତ ଓଡ଼ିଆ କବିତା (୨୦୦୯)
- ନାରୀ ଜନ୍ମ (୨୦୧୫) ମନୋରମା ପ୍ରକାଶନ
- କବିତାର ଉଦ୍‌ଭାସନ ଓ ନବ୍ୟାଲୋଚନା (୨୦୧୫) ବିଦ୍ୟାପୁରୀ ।

### ଅନୁବାଦ:

- ଅରଣା ସ୍ୱପ୍ନର ରାତି (ନୋବେଲ ପ୍ରାପ୍ତ ପର୍ଲବକ୍‌ଙ୍କ ଉପନ୍ୟାସ)
- କ୍ରୀତଦାସ (ନୋବେଲ ପ୍ରାପ୍ତ ଆଇଜାକ୍ ସିଂଗରଙ୍କ ଉପନ୍ୟାସ)
- କିଶୋର ପ୍ରେମିକ (ଚିଂଘିଜ୍ ଆଇତ୍‌ମାତଭଙ୍କ ଉପନ୍ୟାସ)
- ନଗର ମନ୍ଥନ (ଡ଼ୋଗ୍ରୀ ଉପନ୍ୟାସ, 'ସାରଥୀ'ଙ୍କର ) କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ ।
- କହ୍ଲଣ ଚରିତ (କାଶ୍ମୀର ମନୋଗ୍ରାଫ୍) କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ
- ଭିନ୍ନ ଦେଶୀର ମୁହଁ (ଲାଟ୍ ଭିଆନ୍ କବିତା ଅନୁବାଦ )
- ସୁବ୍ରମଣ୍ୟ ଭାରତୀ (ଏନ୍.ବି.ଟି. ଆନୁକୂଲ୍ୟରେ)
- ପ୍ରେମର ପାବନୀ ଫଲ୍‌ଗୁ- ଅନୂଦିତ ଉପନ୍ୟାସ

### ସଂପାଦନା

- ରୁଚିପୂର୍ଣ୍ଣ, ଅଭିନବ କବିତା ପତ୍ରିକା 'ଉଦ୍‌ଭାସ'ର ନିୟମିତ ସଂପାଦନା ୨୦୦୩ ମସିହାଠାରୁ ।

## ୨-କୃତିତ୍ୱ

- ☞ ପ୍ରଜାତନ୍ତ୍ର ଯୁବ କବି ପୁରସ୍କାର ୧୯୬୨
- ☞ ବିଷୁବ କବିତା ପୁରସ୍କାର ୧୯୮୧
- ☞ ରାଜ୍ୟ ସାହିତ୍ୟ ଏକାଡ଼େମୀ ପୁରସ୍କାର ୧୯୮୬
- ☞ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ୨୦୦୧
- ☞ କର୍ଣ୍ଣାଟକର ଏନ୍.ଏନ୍. ଥିରୁମଲାମ୍ବା ଜାତୀୟ ପୁରସ୍କାର ୨୦୦୧
- ☞ କ୍ରିଟିକ୍ ସର୍କଲ ଇଣ୍ଡିଆ ପୁରସ୍କାର ୧୯୯୬
- ☞ S.B.I କବିତା ପୁରସ୍କାର
- ☞ SAIL କବିତା ପୁରସ୍କାର
- ☞ J.K. Paper କବିତା ପୁରସ୍କାର
- ☞ କବି ସୁଭଦ୍ରା କୁମାରୀ ଚୌହାନ କବିତା ସମ୍ମାନ (୨୦୦୭) (ଜାତୀୟ ହିନ୍ଦୀ, ଏକାଡ଼େମୀ, କଲିକତା ଓ H.R.D. ବିଭାଗ ନୂଆଦିଲ୍ଲୀର ମିଳିତ ଆନୁକୂଲ୍ୟରେ)
- ☞ ଉତ୍କଳ ସୂର୍ଯ୍ୟ ସମ୍ମାନ-ଏ.ଆର୍.ଏଫ୍ ତରଫରୁ (୨୦୦୮)
- ☞ କବି ସଚ୍ଚି ରାଉତରାୟ କବିତା ସମ୍ମାନ ୨୦୦୮-ଖୋର୍ଦ୍ଧା ଲୋକଉତ୍ସବ ତରଫରୁ
- ☞ ସାହିତ୍ୟ ପୃଥିବୀ ପୁରସ୍କାର ୨୦୧୧
- ☞ ଗଙ୍ଗାଧର ରଥ ଫାଉଣ୍ଡେସନ୍ ପକ୍ଷରୁ ସାହିତ୍ୟ ଭାରତୀ ପୁରସ୍କାର ୨୦୧୪
- ☞ ୨୦୦୩ରେ ଆମେରିକାର ନ୍ୟୁଜର୍ସିଠାରେ O.S.A.ସମ୍ମିଳନୀରେ 'କି' ନୋଟ' ବକ୍ତବ୍ୟ ପ୍ରଦାନ
- ☞ ମରିସସ୍ ଠାରେ ହିନ୍ଦୀ ଏକାଡେମୀ ଓ ଭାରତୀୟ କବିତାର ସଭାରେ ସଭାପତିତ୍ୱ
- ☞ ଦୀପକ ମିଶ୍ର କବିତା ସମ୍ମାନ
- ☞ ଆଜୀବନ ରଚନା ସମ୍ମାନ (ଭୁବନେଶ୍ୱର ପୁସ୍ତକମେଳା ୨୦୦୬
- ☞ ସଚ୍ଚିରାଉତରା କବିତା ସମ୍ମାନ (ଭୁବନେଶ୍ୱର ପୁସ୍ତକମେଳା ୨୦୧୫)
- ☞ ଯଦୁନାଥ କବିତା ସମ୍ମାନ

- ଅପୂର୍ବା 'କବିତା ଗୌରବ' ପୁରସ୍କାର
- Rock Pebbles Poetry award
- ଯୁଗଶ୍ରୀ, ଯୁଗନାରୀ କବିତା ପୁରସ୍କାର
- ଅନ୍ୟାନ୍ୟ ଅନେକ ସାରସ୍ୱତ ଅନୁଷ୍ଠାନ ତରଫରୁ ସଂବର୍ଦ୍ଧନା ।

## ଇଂରାଜୀ ଓ ଭାରତୀୟ ଭାଷାରେ ପ୍ରକାଶିତ କବିତା ଗ୍ରନ୍ଥ :

- ସମୟ ନହିଁ ହେି: ଚୁନୀହୁଇ କବିତାଏଁ-ଅନୁବାଦ: ପଦ୍ମଶ୍ରୀ ଶ୍ରୀନିବାସ ଉଦଗାତା ୧୯୯୪ ରାଧାକୃଷ୍ଣ ପ୍ରକାଶନ, ନୂଆଦିଲ୍ଲୀ ।
- ଶବରୀ, ଅନୁବାଦ: ପଦ୍ମଶ୍ରୀ ଶ୍ରୀନିବାସ ଉଦଗାତା ୧୯୯୬ ବାଣୀ ପ୍ରକାଶନ, ନୂଆଦିଲ୍ଲୀ, ୨ୟ ସଂସ୍କରଣ ୨୦୧୫ ।
- ଅଧା ଅଧା ନକ୍ଷତ୍ର-ଅନୁବାଦ: ଡଃ. ରାଜେନ୍ଦ୍ର ପ୍ରସାଦ ମିଶ୍ର, ୨୦୦୨, ମେଧାବୁକ୍ସ, ନୂଆଦିଲ୍ଲୀ
- ତୁହ୍ମାରେ ଲିୟେ ହରବାର- ୨୦୧୫ ବାଣୀ ପ୍ରକାଶନ, ନୂଆଦିଲ୍ଲୀ
- ତନ୍ମୟ ଧୂଳି-ଅନୁବାଦ: ଡଃ. ରାଜେନ୍ଦ୍ର ପ୍ରସାଦ ମିଶ୍ର, ୨୦୦୪, ୨୦୧୫ କେନ୍ଦ୍ର ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ, ପ୍ରକାଶନ ।
- A Time of Rising : Translation Padmashree Jayanta Mohapatra, Publisher: Har-Ananda Publication, New Delhi-2001.
- Enchanted Dust: Translation: R.P. Samal, Central Sahitya Academy, New Delhi.
- Dhoor Kamni (Punjab): Translation: Dr. Vanita, Central Sahitya Academy, New Delhi.
- Magan Dhuli (Rajsthani) : Translation: Sri Atul Kumar Sharma, Central Sahitya Academy, New Delhi.
- Tanmaya Dhulee (Telugu) Tanslation : Prof. N. Gopi, Central

Sahitya Academy, New Delhi.

☞ VASIKARIKKUM DHOOSI (Tamil) Tr. by Mrs. Madhumita, Central Sahitya Academy, New Delhi.

☞ ମରାଠୀ ଭାଷାରେ ଶ୍ରୀମତୀ ରାଧା ଯୋଗଲେ କରଙ୍କ ଦ୍ୱାରା କେନ୍ଦ୍ର ସାହିତ୍ୟ ଏକାଡ଼େମୀ ତରଫରୁ ଅନୂଦିତ ହୋଇ 'ତନ୍ମୟ ଧୂଳି' ପ୍ରକାଶିତ ।

☞ Tanmaya Dhuli (Malayalam): -Trans. Poet Attoor Ravi Verma. Publication Sahitya Akademi, Chennai.

☞ ତନ୍ମୟ ଧୂଳି (ଗୁଜୁରାଟୀ)- Trans. Renuka Sriram Soni, Publication Sahitya Akademi, Western Zone.

☞ ବଂଗଳାରେ ଡଃ ମୃଦୁଳା ମିଶ୍ର ଓ ଡଃ ସିପ୍ରା ରାୟଙ୍କ ଦ୍ୱାରା ଅନୂଦିତ ଓ ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ।

☞ କୋଂକଣୀ ଭାଷାରେ ଅନୂଦିତ ଅନୁବାଦିକା: ନୂତନ ସଖର ଦାଣ୍ଡେ ପ୍ରକାଶିତ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ।

☞ ସମୁଦାୟ ୧୩ ଗୋଟି ଭାରତୀୟ ଭାଷାରେ 'ତନ୍ମୟ ଧୂଳି' ଅନୂଦିତ ଓ ପ୍ରକାଶିତ ।



କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ପ୍ରଖ୍ୟାତ କବି ପ୍ରତିଭା ଶତପଥୀ, ଯାହାଙ୍କ କବିତାରେ ଧୀଶକ୍ତି, ଗଭୀରତା, ସାଂଗୀତିକତା, କାବ୍ୟିକ ମୃଦୁସ୍ପର୍ଶ (sweep) ଅନ୍ତରଙ୍ଗତା, ଶ୍ଳେଷ, ନିରୀକ୍ଷଣ ଶକ୍ତି, ପ୍ରଚୁର ଅଧ୍ୟୟନ ଏବଂ ସର୍ବୋପରି ଅନ୍ତର୍ନିହିତ (ଗୂଢ଼) ସଂବେଦନଶୀଳତା ଭରିରହିଛି । ସେଥିପାଇଁ ତାଙ୍କ କବିତା ପାଠକର ଆଗ୍ରହ ଦାବୀକରିଥାଏ ଓ ପ୍ରାପ୍ତ ହୋଇଥାଏ । ତାଙ୍କ ରଚ଼ନାରେ ଚେତନାର ଏକକ ଉଜ୍ୱଳତା ଓ ସତେଜତାକୁ ପାଠକ ସାମ୍ନା କରିପାରେ ।

ସ୍ପର୍ଦ୍ଧା ଓ ବିନୟ ତଥା ସାହସ ଓ ସହିଷ୍ଣୁତାର ସ୍ୱର ତାଙ୍କ କବିତାକୁ ପ୍ରାଣସ୍ପର୍ଶୀ କରିଥାଏ । ପ୍ରକୃତିର ଆତ୍ମାର ଉଦ୍ଭାବନ, ନିର୍ଜନତା, ମାନବୀୟ ସଂପର୍କର ନିବିଡ଼ତା ତାଙ୍କ କବିତା ପଠନ ଦ୍ୱାରା ହୃଦୟଙ୍ଗମ କରିହୁଏ । ଭାଷାର ଅଭିଜ୍ଞାନ ସହ ଏକାତ୍ମ ହେବା, ଭାଷାର ନୂତନ ଅଭିଜ୍ଞତାକୁ ସୃଷ୍ଟି କରିବା ଦ୍ୱାରା ତାଙ୍କ କବିତା ନମନୀୟ, ଜୀବିତ ଓ ଆନନ୍ଦମୟ ରୂପେ ପ୍ରତୀତ ହୋଇଥାଏ । ଏଠାରେ ସଂକଳିତ କବିତାମାନଙ୍କ ସ୍ରୋତତଳେ ମରଣଶୀଳତାର ତୀବ୍ର ଓ ଅନ୍ଧକାରମୟ ଅବବୋଧ ସଂଚ଼ରିତ ହୁଏ ଏବଂ ପୃଥିବୀର ଯନ୍ତ୍ରଣାର ଅଭ୍ୟନ୍ତରରୁ ବେଳେବେଳେ ଏକ ସୁମଧୁର ସଂଗୀତ ଶୁଭିଯାଏ ।

- ପ୍ରକାଶକ



**JABAKUSUMA SANKASAN**
**by Dr. Prativa Satpathy**

Published by SWASTIK,
Sailashree Vihar, Bhubaneswar
Marketing by : Paschima Publications,
1882, Nayapalli, Bhubaneswar,
Odisha-12
1st Edition: 2016
Price . 130.00





ISBN 978-81-93097-52-3